# ହସନ ଜମାଲଙ୍କ

## ଚାରିଟି ଶିଶୁଗଳ୍ପ

ଅନୁବାଦ
କୃତ୍ତିବାସ ନାୟକ

ଚିତ୍ରାଙ୍କନ
ଖାଲିଦ-ବିନ୍-ସୁହେଲ



# ହସନ ଜମାଲଙ୍କ

## ଚାରିଟି ଶିଶୁଗଳ୍ପ

ଅନୁବାଦ
କୃତ୍ତିବାସ ନାୟକ

ଚିତ୍ରାଙ୍କନ
ଖାଲିଦ-ବିନ୍-ସୁହେଲ






ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



## ସମଦର୍ଶୀ

ସମଦର୍ଶୀ ତାଙ୍କୁ କୁହାଯାଏ, ଯିଏ ସମସ୍ତଙ୍କୁ ସମାନ ଭାବରେ ଦେଖେ । ଯାହା ପାଖରେ ଏହି ଗୁଣଟି ଥାଏ, ତାକୁ ଭାଗ୍ୟବାନ କୁହାଯାଏ । ଏହି ମହତ ଗୁଣଟି ପାଇଁ ସେ ଭଗବାନଙ୍କର ଆଶୀର୍ବାଦ ଲାଭକରେ । କିନ୍ତୁ ବେଳେବେଳେ ଏହି ଆଶୀର୍ବାଦ ଅଭିଶାପରେ ପରିଣତ ହୋଇଯାଏ, ଯେତେବେଳେ ଏହି ଶବ୍ଦଟିକୁ ଆମେ ହାସ୍ୟ-ବ୍ୟଙ୍ଗ ମାଧ୍ୟମରେ ବ୍ୟବହାର କରୁ । ଫଳରେ ଏହାର ଅର୍ଥ ବଦଳିଯାଏ ।

ବିଚରା ବଂଶୀ କ୍ଷେତ୍ରରେ ଏଭଳି ଘଟଣାଟିଏ ଘଟିଥିଲା । ବଂଶୀ ଥିଲା ସୁସ୍ଥ ସବଳ ଓ ବୁଦ୍ଧିମାନ ପିଲା । କିନ୍ତୁ ଦୈବଯୋଗରୁ ତା' ବାମପାଖ ଆଖିଟି ନଷ୍ଟ ହୋଇଯାଇଥିଲା । ଗୋଟିଏ ଆଖିରେ ସେ କେବଳ ଦେଖିପାରୁଥିବାରୁ ତା'ର ନାମ 'ସମଦର୍ଶୀ' ଦିଆହୋଇଥିଲା ।

ଛୋଟ ବୟସରେ ବଂଶୀ ଯେତେବେଳେ ଜାଣିଲା ଯେ ତା'ର ବାମ ଆଖିଟି ନାହିଁ, ସେତେବେଳେ ସେ ବହୁତ ଦୁଃଖ କରିଥିଲା । ସେ ଭାବୁଥିଲା ଯେ ସେ ହେଉଛି ସଂସାରରେ ଜଣେ ଭାଗ୍ୟହୀନ ପିଲା । ଭଗବାନ କ'ଣ ଭାବି ତା' ସହିତ ଏମିତି ଅନ୍ୟାୟ କଲେ ? ତା' ବାପା-ମାଆଙ୍କର କେଉଁ ପାପର ଫଳ ତାକୁ ମିଳିଛି ?

ଅନେକ ଦିନ ପର୍ଯ୍ୟନ୍ତ ବଂଶୀ ଏକଥା ଭାବି ଦୁଃଖୀ ରହୁଥିଲା । କିନ୍ତୁ ଧୀରେ ଧୀରେ ସେ ଯେତେବେଳେ ଦେଖିଲା ଆଉ ବୁଝିଲା ତା' ଭଳି ଆହୁରି ଅନେକ ପିଲା ଅଛନ୍ତି, ଯେଉଁମାନଙ୍କର ଶରୀରରେ ବିଭିନ୍ନ ଅଙ୍ଗ ଖରାପ ହୋଇଯାଇଛି ତା' ମନର ପୀଡ଼ା ଶାନ୍ତ ପଡ଼ିଗଲା । କାହାର କାନକୁ ଶୁଭୁନାହିଁ ତ କିଏ ଠିକ୍ ଭାବରେ କଥା କହିପାରୁ ନାହିଁ, ପୁଣି କିଏ ଚାଲିପାରୁ ନାହିଁ ତ କାହାର ହାତ ବଙ୍କା ହୋଇଯାଇଛି, କିଏ ଗେଡ଼ା ତ ପୁଣି କିଏ ଡେଙ୍ଗା । କେତେକ କିଛି ବୁଝିପାରନ୍ତି ନାହିଁ । ଆଉ କିଏ ପାଗଳ ପରି ଏଣୁତେଣୁ ଗପୁଛି । ତେଣୁ ଏହାକୁ ନେଇ ମୁଁ କାହିଁକି ଚିନ୍ତା କରିବି ?

ଏହି ପିଲାମାନଙ୍କ ତୁଳନାରେ ମୁଁ ତ ଭଲରେ ଅଛି । ଅଯଥାରେ ମୁଁ ଦୁଃଖ କରୁଥିଲି । କାହିଁ କେବେ ତ କୌଣସି ପିଲା ମୋ ଖରାପ ଆଖିକୁ ଦେଖି ମୋତେ ଚିଡ଼େଇ ନାହାନ୍ତି । କେହି ତ କେବେ ହାସ୍ୟ-ବ୍ୟଙ୍ଗ କରି ତା' ଆଖି ବିଷୟରେ କଥାବାର୍ତ୍ତା ବି ହୋଇ ନାହାନ୍ତି । ଏଥିପାଇଁ ମୁଁ ଦୁର୍ବଳ ମନେକରି କାହିଁକି ଦୁଃଖ କରିବି ? ତା'ର ବ୍ୟବହାରରୁ ଏମିତି ଲାଗୁଥିଲା ଯେପରି ତା'ର ଦୁଇଟିଯାକ



ଆଖି ସମସ୍ତଙ୍କ ଭଳି ଠିକ୍ ଅଛି ଆଉ ସେ ସବୁ ଜିନିଷ ଠିକ୍ ଭାବରେ ଦେଖିପାରୁଛି ।

ଯେଉଁଦିନଠାରୁ ସତୀଶ ଆସି ବଂଶୀର ଶ୍ରେଣୀରେ ପାଠ ପଢ଼ିଲା ସେହିଦିନ ପୁଣି ସେ ଅନୁଭବ କଲା, ତା' ପ୍ରତି ଅନ୍ୟାୟ ହୋଇଛି ।

ସତୀଶ ସବୁବେଳେ ତାକୁ ହାସ୍ୟ-ବ୍ୟଙ୍ଗରେ ହଇରାଣ କରିପକାଏ । ଏଇଟା ତା' ପ୍ରତି ଅନ୍ୟାୟ ନୁହେଁ ତ ଆଉ କ'ଣ ?

ଲାଗୁଥିଲା ତାକୁ ଦୁଃଖ ଦେବାପାଇଁ ହିଁ ସତୀଶ ଜନ୍ମ ହୋଇଛି ।

ଏମିତି ତ ସତୀଶ ବହୁତ ଭଲପିଲା ଥିଲା, ଦେଖିବାକୁ ସୁନ୍ଦର, ସ୍ୱାସ୍ଥ୍ୟବାନ ଓ ସବୁବେଳେ ହସ ହସ ମୁହଁ । କିନ୍ତୁ ସେ ନିଜକୁ ଭାରି ସୁନ୍ଦର ଏବଂ ସର୍ବଗୁଣସମ୍ପନ୍ନ ମନେକରୁଥିଲା । ତେଣୁ ସେ ଅନ୍ୟର ଦୁର୍ବଳତା ଓ ଗୁଣକୁ ଧରି ତା' ପଛରେ ପଡ଼ି ରହୁଥିଲା ।

ପ୍ରଥମେ ପ୍ରଥମେ ସେ ବଂଶୀକୁ ଦେଖିଲେ ମୁରୁକି ମୁରୁକି ହସୁଥିଲା । ସେ ଭାବୁଥିଲା, ବଂଶୀଟା ଗୋଟାଏ କାର୍ଟୁନ । ଧୀରେ ଧୀରେ ସେ ସମସ୍ତଙ୍କ ସହିତ ମିଳାମିଶା କରିବା ପରେ ବଂଶୀର ଖରାପ ଆଖିଟା ତା' ପାଇଁ ଗୋଟାଏ ମଜା ଉଡ଼େଇବା ଜିନିଷ ହୋଇଗଲା ।

କେହି ଯଦି ବଂଶୀକୁ ତା' ନାଁ ଧରି ଡାକେ, ତେବେ ସେ କହେ, 'ଆରେ ଏ କଣା ! କଣା ବଂଶୀ ! ସମଦର୍ଶୀ ।'

ସେ ଏତେ ଉଚ୍ଚସ୍ୱରରେ କହେ ଯେମିତିକି ବଂଶୀ ତା'ର ବିକୃତ ନାମକୁ ଠିକ୍ ଭାବରେ ଶୁଣିପାରିବ ।

ବଂଶୀକୁ ବାରମ୍ବାର 'କଣା ବଂଶୀ ସମଦର୍ଶୀ' କହିବାର ପରିଣାମ ହେଲା ଅନ୍ୟମାନେ ବି ତାକୁ 'ସମଦର୍ଶୀ' ବୋଲି ଡାକଲେ । ସତକୁ ସତ କିଛିଦିନ ପରେ ତା'ର ସାଙ୍ଗମାନେ ବଂଶୀ ନାମକୁ ଭୁଲିଯାଇ 'ସମଦର୍ଶୀ' ବୋଲି ଡାକିବା ଆରମ୍ଭ କଲେ ।

ବଂଶୀର ନାମକୁ 'ସମଦର୍ଶୀ' ବୋଲି ସମ୍ବୋଧନଟା ସତେ ଯେମିତି ତା' ପାଇଁ ଗୋଟାଏ ଗାଳି ହୋଇଯାଇଥିଲା, ଯେମିତି ଭଲ ଖୋଳ ଭିତରେ କୁଇନାଇନ ପିତା ବଟିକା ଥାଏ ।

ସତୀଶ ତାକୁ ଥରକୁ ଥର ଚିଡ଼େଇବାକୁ ଚେଷ୍ଟା କରୁଥାଏ । କେବେ କେବେ ସେ ତା' ପାଖକୁ ଯାଇ ଛିଡ଼ା ହୋଇଯାଉଥିଲା । ଯେଉଁପାଖ ଆଖିଟା ତା'ର ନଷ୍ଟ ହୋଇଯାଇଥିଲା, ସତୀଶ ସେଇପାଖରେ ଠିଆହୋଇ ବଂଶୀକୁ କହେ, "ସମଦର୍ଶୀ, ମୁଁ ତୋତେ ଦେଖାଯାଉଛି ତ ? ମୁଁ କିଏ ଚିହ୍ନିପାରୁଛୁ ?"

ତାକୁ ଦେଖିବାକୁ ବଂଶୀ ମୁଣ୍ଡ ବୁଲେଇବା ବେଳକୁ, ସତୀଶ ତା' ସାମନାକୁ ଚାଲିଆସି ଠିଆହୋଇ କହେ, "ଆରେ ତୁ ମୁଣ୍ଡ ବୁଲେଇବା କଷ୍ଟ କାହିଁକି କରୁଛୁ ? ଦେଖ, ତୋର ସାଙ୍ଗ ସତୀଶ ତୋ ଆଗରେ ଠିଆ ହୋଇଛି ।"

ହଉ, କିଛି ନାହିଁ କହି ବଂଶୀ ଚୁପ୍ ରହିଯାଏ । କିନ୍ତୁ ସତୀଶର ସାଙ୍ଗମାନେ ଏକସଙ୍ଗେ ହସିଉଠନ୍ତି ।



ଏସବୁ ଦେଖି ବଂଶୀ ମନରେ ରାଗ, ଅନୁତାପ ଓ ଦୁଃଖ ସୃଷ୍ଟି ହୋଇଯାଏ । ସେ ଚିନ୍ତାରେ ପଡ଼ିଯାଏ ।
ଖେଳପଡ଼ିଆରେ ଯେତେବେଳେ ଦୁଇଦଳ ଭିତରେ ଖେଳହେବା କଥା ପଡ଼େ ସେତେବେଳେ

ସତୀଶ କହିଉଠେ, "ମୁଁ ତ ବଂଶୀକୁ ଆମ ଦଳରେ ମୋଟେ ନେବି ନାହିଁ । ସେ ଯଦି ଆମ ଦଳରେ ମିଶିଲା ନା, ଜାଣ ଆମର ଆଗରୁ ପରାଜୟ ହୋଇସାରିଛି ।"

ବଂଶୀ ବିଚରା ଏକଥା ଶୁଣେ । ସେ ବୁଝିପାରେ, ତାକୁ ବିରକ୍ତ କରିବା ପାଇଁ ସତୀଶ ଏଭଳି କଥା କହୁଛି ।

ସତୀଶର କଥା ଶୁଣି ଅନ୍ୟ ସାଙ୍ଗମାନେ ବଂଶୀ ଆଡ଼କୁ ଚାହିଁ ହସି ପକାନ୍ତି ।

ସମସ୍ତଙ୍କୁ ଚାହିଁ ବଂଶୀ କହେ, "ମୋର ତୋ ସହିତ ଖେଳିବାର ନାହିଁ ।"

ତାପରେ ସେ ଏକୁଟିଆ ଖେଳପଡ଼ିଆରୁ ଦୂରରେ ଯାଇ ଠିଆହୋଇ ରହେ ସତେ ଯେମିତି ସେ ଅଛୁଆଁ ହୋଇଯାଇଛି ।

ଏଭଳି ଘଟଣା ଥରେ ଅଧେ ହେଲେ ସମ୍ଭାଳି ହୋଇ ଯାଆନ୍ତା । କିନ୍ତୁ ସତୀଶ ଓ ତା'ର ଦୁଷ୍ଟ ସାଙ୍ଗମାନେ ବଂଶୀକୁ ସବୁଦିନ ଏମିତି ବାରମ୍ବାର ହଇରାଣ କରୁଥିଲେ ।

ଏଇ ସାଙ୍ଗ ଶମ୍ଭୁର କଥାକୁ ଧରାଯାଉ । ସେ ଶ୍ରେଣୀରେ ବଂଶୀ ପାଖରେ ବସେ । ସେଦିନ ଶିକ୍ଷକ ପାଠ ପଢ଼ାଉଥାଆନ୍ତି । ପେନ୍ସିଲ ଆଣିବା ପାଇଁ ବଂଶୀ ହାତ ବଢ଼େଇବା ବେଳକୁ ତା' ଆଙ୍ଗୁଳିଟା କାଳିରେ ଓଦା ହୋଇଗଲା । ପେନ୍ସିଲଟା ସେ ଯେଉଁଠି ରଖିଥିଲା, ସେଇଠି ନଥିଲା । ଶମ୍ଭୁ ସେ ପେନ୍ସିଲକୁ ଉଠେଇ ନେଇ ତା' ବାମପଟେ ଥୋଇଦେଇଥାଏ । ଯେମିତି କି ବଂଶୀ ତା' ପେନ୍ସିଲକୁ ଦେଖିପାରିବ ନାହିଁ । ବିଚରା ବଂଶୀ ଏପଟ ସେପଟ ଚାହିଁ, ଖୋଜି ଖୋଜି ତା' ପେନ୍ସିଲ ପାଇଲା । ପେନ୍ସିଲ ଉଠେଇବାବେଳେ ସେ ଦେଖିଲା ଶମ୍ଭୁ ତା' ଆଡ଼କୁ କଣେଇ କଣେଇ ଚାହିଁ ମୁରୁକି ହସୁଛି । ତା' ପଛରେ ବସିଥିବା ସତୀଶ ବି ଓଠ ଚାପି ଚାପି ହସୁଥିଲା ।

ବାରମ୍ବାର ହଇରାଣ ହେବାପରେ ଦିନେ ବଂଶୀ ଶ୍ରେଣୀ ଶିକ୍ଷକଙ୍କ ପାଖରେ ଅଭିଯୋଗ କଲା । ଗୁରୁଜୀ ପିଲାମାନଙ୍କ ଦୁଷ୍ଟାମି ପାଇଁ ବିରକ୍ତି ପ୍ରକାଶ କରିଥିଲେ । ସମସ୍ତଙ୍କୁ ସାବଧାନ କରାଇଦେଇ କହିଥିଲେ, "ଭବିଷ୍ୟତରେ ଏଭଳି ଅଭିଯୋଗ ମିଳିଲେ, ଦୋଷୀକୁ ଦଣ୍ଡ ଦିଆଯିବ ।" ଏଥର ବଂଶୀ ଭାବିଲା ଏବେ ମୋତେ ହଇରାଣ ହେବାରୁ ମୁକ୍ତି ମିଳିଯିବ । କିନ୍ତୁ ସେକଥା ହେଲାନାହିଁ । ଦୁଷ୍ଟ ସାଙ୍ଗମାନେ ଭାବିଲେ ସମଦର୍ଶୀ ଏଥର ଆମ ସାଙ୍ଗରେ ଲଢ଼ିବାକୁ ତା'ର ବଳ ସଞ୍ଚୟ କଲାଣି । କିନ୍ତୁ ପ୍ରକୃତରେ ବିଚରା ବଂଶୀର ଉଦ୍ଦେଶ୍ୟ ସେଭଳି ନଥିଲା । ତଥାପି ସତୀଶ, ଶମ୍ଭୁ ଓ ଅନ୍ୟ ସାଙ୍ଗମାନେ ଶିକ୍ଷକଙ୍କ ଗାଳିକୁ ବେଖାତିର କରି ବଂଶୀକୁ ଅଧିକରୁ ଅଧିକ ଖୋଲାଖୋଲି ଭାବରେ ଚିଡ଼େଇବାରେ ଲାଗିପଡ଼ିଲେ । ବଂଶୀ ସେମାନଙ୍କ କଥାକୁ ଶୁଣେ, ମୁଣ୍ଡ ତଳକୁ କରି ବସେ ।

ସେଦିନ ବଂଶୀ ବଡ଼ ଉଦାସ ମନରେ ଶ୍ରେଣୀରେ ଚୁପ୍‌ଚାପ୍ ବସିଥାଏ । ଯାହାର ମାଆ ଘରେ

ବେମାର ପଡ଼ିଥାଏ, ସିଏ ହିଁ ଜାଣେ ତା' ମନ କିପରି ଦୁଃଖ ଥାଏ । ପାଠପଢ଼ାରେ ତା' ମନ ଲାଗୁନଥାଏ । ତା' ଆଖି ଆଗରେ ମାଆଙ୍କର ଶୁଖିଲା, କାନ୍ଦ କାନ୍ଦ ମୁହଁଟି ବାରମ୍ବାର ଦେଖାଯାଉଥାଏ । ସେତିକିବେଳେ ସତୀଶ ଆସି ତା' ମୁହଁକୁ ଚାହିଁ ଚିଡ଼େଇବା ପାଇଁ କହିଲା, "ଲାଗୁଛି ଆଜି ସମଦର୍ଶୀ ଘରେ କିଏ ଜଣେ ମରିଯାଇଛି । ଦେଖରେ ପିଲେ, ସେ କେମିତି ମୁହଁଟାକୁ ଫୁଲେଇ ବସିଛି ।"

ବଂଶୀ ସେଦିନ ତାକୁ କିଛି କହିପାରିଲା ନାହିଁ । ଘରକୁ ଫେରିଆସି ମାଆର ପଣତକାନିକୁ ମୁହଁରେ ଦେଇ ଧକେଇ ହୋଇ କାନ୍ଦିଲା । ତା'ର ମାଆ ଶ୍ରେଣୀରେ ଘଟିଥିବା ସବୁକଥା ଶୁଣିସାରି କହିଲେ, "ଆରେ ବାପା ! ଏତେ ଟିକିଏ କଥାକୁ ତୁ ଧରିବସିଛୁ ? ଛି, ଭୁଲିଯା' ସେକଥା । ତୁ ମନେରଖ, ଈଶ୍ୱରଙ୍କର ଇଚ୍ଛାରେ ତୋର ଗୋଟିଏ ଆଖି ନଷ୍ଟ ହୋଇଯାଇଛି । ଏକଥା ଜାଣିରଖ, ସେ ଦୁଷ୍ଟପିଲାମାନେ ତୋତେ ନୁହେଁ, ବରଂ ଈଶ୍ୱରଙ୍କୁ ହାସ୍ୟ–ବ୍ୟଙ୍ଗ କରୁଛନ୍ତି । ଈଶ୍ୱର ତ ତୋତେ ଏଭଳି କରିଛନ୍ତି, ସେ ପୁଣି ତୋ ପାଇଁ କିଛି ଭଲ ବି କରିବେ ।"

ବଂଶୀ ମାଆ କେମିତି ମନ ନେଇ ଏକଥା କହିଦେଲେ କେଜାଣି ? ଦୁଇଦିନ ପରେ କ୍ରିକେଟ୍ ଖେଳୁଖେଳୁ ସତୀଶର ଆଖିରେ କ୍ରିକେଟ୍ ବଲ୍‌ଟା ବାଜିଗଲା । ତାକୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ତା' ଆଖିରେ ମାଡ଼ଟା ଖୁବ୍ ଜୋର୍‌ରେ ବାଜିଥିଲା । ତେଣୁ କେତେଦିନ ଧରି ସେ ସ୍କୁଲକୁ ଆସିପାରିଲା ନାହିଁ ।

ସତୀଶର ସାଙ୍ଗମାନେ କଥାବାର୍ତ୍ତା ହେଉଥିଲେ, "ଆରେ ! ସତୀଶର ନିଜ ଅସାବଧାନତା କାରଣରୁ ପରା ଏମିତି ଦୁର୍ଘଟଣା ଘଟିଲା ।"

'ତା' କଥା ଛାଡ଼ ଭାଇ ! ସେ ଖେଳପଡ଼ିଆରେ ଏମିତି ଖେଳେ, ସତେ ଯେମିତି ଗୋଟାଏ ପୋଖତ ଖେଳାଳି ।'

"ଭଗବାନ ନ କରନ୍ତୁ, ତା'ର ଆଖିଟା ନଷ୍ଟ ହୋଇଯାଉ ? ମୋତେ ଲାଗୁଛି, ସମଦର୍ଶୀର କୁଦୃଷ୍ଟି ପଡ଼ିବାରୁ ଏମିତି ଦୁର୍ଘଟଣା ଘଟିଛି ।

"ସେ ଯାହାହେଉ, କୁହାଯାଏ ଭଲ ପହଁରିବା ଲୋକ ହିଁ ପାଣିରେ ବୁଡ଼ିଯାଆନ୍ତି । ତେଣୁ ସତୀଶ ଭଲ ଖେଳାଳି ହୋଇଥିବାରୁ ତା' ଆଖିରେ ବଲ୍ ବାଜିଲା ।"

ଏସବୁ କଥା ଶୁଣି ଶୁଣି ବଂଶୀ ଭାବୁଥାଏ ଏ ଦୁର୍ଘଟଣା ପାଇଁ ତା'ର ଦୋଷ କ'ଣ ? ବୋଧହୁଏ, ତା' ମାଆ ତାକୁ ସେଦିନ ଅଭିଶାପ ଦେଇଥିବେ । କିନ୍ତୁ ସେ ଜଣେ ମାଆ ହୋଇ ସେମିତି କାମ କାହିଁକି କଲେ ? ସତୀଶ ଆଖିରେ ବଲ୍ ବାଜିବା କଥା ଶୁଣି ସିଏ ତ ଚମକି ପଡ଼ିଥିଲେ । ଆଉ ଏମିତି ମନଦୁଃଖ କଲେ, ସତେ ଯେମିତି ତା' ଆଖିରେ ବଲ୍‌ଟା ବାଜିଯାଇଛି । ତାପରେ ସେ ତାକୁ



କହିଥିଲେ, "ତୁ ଏବେ ସତୀଶ ଘରକୁ ଯାଇ ତାକୁ ଦେଖିଆସିବୁ । କିନ୍ତୁ ସେଦିନ ସେ ଯାଇନଥିଲା ; କାରଣ କାଳେ ସତୀଶ ତାକୁ ଦେଖି ଓଲଟା ଅର୍ଥ ବାହାର କରିବ ।"

ବଂଶୀର ମାଆ ତାକୁ ବାରମ୍ବାର କହିବାରୁ ଦିନେ ତାକୁ ସତୀଶର ଘରକୁ ଯିବାକୁ ପଡ଼ିଲା ।

ସତୀଶର ଆଖିରେ ପଟି ବନ୍ଧା ହୋଇଥାଏ । ସେ ନିସ୍ତେଜ ହୋଇ ଖଟିଆରେ ପଡ଼ିଥାଏ । ତା'ର ମାଆ ସେ ଖଟିଆରେ ଯାଇ ବସିଥାନ୍ତି । ବଂଶୀ ଯାଇ ସତୀଶ ମୁଣ୍ଡରେ ହାତ ବୁଲେଇ ଆଣି ସେଇଠି ଠିଆ ହେଲା । ସତୀଶ ତାକୁ ଦେଖି ଚୁପ୍ ରହିଲା ।

"ଏବେ ଆଖି କେମିତି ଅଛି ? ଡାକ୍ତର କ'ଣ କହୁଛନ୍ତି ।" ଶିଷ୍ଟାଚାର ରକ୍ଷାକରି ବଂଶୀ ପଚାରିଦେଲା । କିନ୍ତୁ ସତୀଶ ରାଗିଲା ଭଳି ଆଖିରେ ଚାହିଁ ଚୁପ୍ ରହିଗଲା । ବଂଶୀ ଭାବୁଥିଲା ସତୀଶ ତାକୁ କିଛି ନା କିଛି ନିଶ୍ଚୟ କହିବ । କିନ୍ତୁ ସେ କିଛି ସମୟ ପରେ ତା' ମାଆକୁ କହିଲା, "ମାଆ ! ତାକୁ କହିଦିଅ, ସେ ଏଠୁ ଚାଲିଯାଉ । ମୋତେ ଭଲ ଲାଗୁନାହିଁ ।"

ସତୀଶର ମାଆ କିଛି କହିବା ପୂର୍ବରୁ ତାଙ୍କୁ ନମସ୍କାର କରି ବଂଶୀ ସେଇଠୁ ଚାଲିଆସିଲା । ତା'ର କଅଁଳ ମନରେ ଗଭୀର ଆଘାତ ଲାଗିଲା । କ'ଣ ସହାନୁଭୂତି

ଜଣାଇବା ଗୋଟାଏ ପାପ ? କ'ଣ ଘରକୁ ଆସିଥିବା ଅତିଥିଙ୍କ ସହିତ ତା'ର ଏମିତି ବ୍ୟବହାର କରିବା ଠିକ୍ ହେଲା ?

ସତୀଶ ବେଶିଦିନ ଘରେ ରହିପାରିଲା ନାହିଁ । ତା' ଭଳି ଦୁଷ୍ଟପିଲା କ'ଣ ଘରେ ଚୁପ୍ ହୋଇ ଶୋଇ ରହିପାରିବ ? ଆଖିରେ ପଟି ବନ୍ଧାହୋଇ ଥାଉଁ ଥାଉଁ ସେ ସ୍କୁଲକୁ ଆସିଗଲା । ତଥାପି ତା'ର ଆଖି ପୂରା ଭଲ ହୋଇନଥାଏ ।

ସ୍କୁଲ ବାରଣ୍ଡାରେ ଠିଆହୋଇ ସାଙ୍ଗମାନଙ୍କ ସହିତ ସତୀଶ ଗପସପ କରୁଥାଏ । ତା'ର ଯେଉଁ ଆଖିରେ ପଟି ବନ୍ଧା ହୋଇଥିଲା, ସେଇପଟକୁ ଯାଇ ବଂଶୀ ଠିଆ ହୋଇପଡ଼ି ଧୀର କଣ୍ଠରେ କହିଲା, ''କ'ଣ ଭାଇ ! ମୁଁ ତୋ ଆଖିକୁ ଦେଖାଯାଉଛି ତ ? ମୁଁ ହେଉଛି ତୋର ସାଙ୍ଗ ବଂଶୀ । ତୋ ଭାଷାରେ ମୁଁ 'ସମଦର୍ଶୀ' । ଭଗବାନ କରନ୍ତୁ, ତୋର ଆଖି ନଷ୍ଟ ନହେଉ । ନହେଲେ ତୋତେ ବି ସାଙ୍ଗମାନେ ମୋ ଭଳି 'ସମଦର୍ଶୀ' ବୋଲି ଡାକିବେ । ଖୁବ୍ ମଜା ହେବ, ଦି'ଜଣ କଣା ଏକା ଜାଗାରେ ବସିଥିବା ।''

ସତୀଶର ମନଟା ଭାରି ଟାଣ । ତଥାପି ତା' ମନ ଆଉ ଦେହରେ ସତେ ଯେମିତି ନିଆଁ ଲାଗିଗଲା । ସେ ପ୍ରଥମ ଥର ପାଇଁ ରାଗିଯାଇ କହିଲା, ''ସମଦର୍ଶୀ ଯିଏ, ସେ ସେମିତି ରହିବ । ଆଉ ଦୁଇଚାରି ଦିନ ପରେ ମୋର ଆଖିରୁ ପଟି ଖୋଲା ହୋଇଯିବ । ତାପରେ ଦେଖିବୁ ଅସଲ ସମଦର୍ଶୀ କିଏ ?''

ବଂଶୀ ମୁରୁକି ହସିଦେଲା । ତା'ର ମୁରୁକି ହସ ଅର୍ଥହୀନ ନଥିଲା । ସେ ମନେ ମନେ ଭାବୁଥିଲା, ଆଜି ଭଳି ଆଉ ଭଲ ସୁଯୋଗ ତାକୁ କେବେ ମିଳିନଥା'ନ୍ତା ।

ବଂଶୀ ଓ ସତୀଶଙ୍କ କଥା ଶୁଣି ସତୀଶର ସାଙ୍ଗମାନେ କହିଲେ, ''ଆରେ, ସମଦର୍ଶୀ ତ ଆଜି ଚମକେଇ ଦେଲା ।''

ସତୀଶ ତାଙ୍କ କଥା ଶୁଣି ଗଭୀର ଚିନ୍ତାରେ ପଡ଼ିଗଲା । ବଂଶୀର କଥା ପଦକ ତା' ହୃଦୟରେ ଗଭୀର ଭାବରେ ଲାଗିଯାଇ ସାରିଥିଲା । ସେ କହିଲା, ''ଦୁର୍ବଳ ମୁହୂର୍ତ୍ତରେ ଚତୁରଲୋକ ହିଁ ଚୁପ୍ ରହିଯାଆନ୍ତି । ମୁଁ ଖେଳିବା ସମୟରେ ଯଦି ଟିକେ ସାବଧାନ ହୋଇ ରହିଥାନ୍ତି, ତେବେ ଏଭଳି ପରିସ୍ଥିତି ହୋଇ ନଥା'ନ୍ତା । ପଡ଼ିଯାଇଥିଲେ ଆଣ୍ଠୁଗଣ୍ଠି ଛିଡ଼ିଯାଇଥା'ନ୍ତା, କିନ୍ତୁ ଆଖିରେ ତ ବଲ୍ ବାଜି ନଥା'ନ୍ତା । ବଲ୍‌ଟା ଆଖିରେ ବାଜି ଯାଇଥିବାରୁ ସମଦର୍ଶୀକୁ କହିବାର ସୁଯୋଗ ମିଳିଗଲା । ମାଆଙ୍କୁ କହି ତାକୁ ଘରୁ ବାହାର କରିଦେଇ ସେଦିନ ମୁଁ ଠିକ୍ କରିଥିଲି । ସହାନୁଭୂତି ଜଣେଇବା ନାମରେ ସେ ମୋତେ ଜଳେଇବାକୁ ଆସିଥିଲା । କିଛି ବି ହୋଇ ଯାଉନା କାହିଁକି କାଲି ଏ ଆଖିର ପଟିକୁ ଖୋଲି ପକେଇବି । ଏଇ ପଟି ପାଇଁ ସମଦର୍ଶୀ ମୋତେ ଚିଡ଼ଉଛି । ଆଖି ତ ଠିକ୍ ହୋଇ ଆସିଲାଣି । ଡାକ୍ତରଙ୍କ କହିବା ଅନୁସାରେ ଏ ପଟି ଖୋଲିବା ଡେରି ହୋଇଛି । କିନ୍ତୁ ମୋତେ ଏ ପଟିବନ୍ଧାରୁ ଏବେ ମୁକ୍ତି ମିଳିଯିବ ।

ତା'ପରଦିନ ସତୀଶ ସ୍କୁଲକୁ ଆସିଲା । ଆଖିରେ ତା'ର ପଟି ନଥିଲା । ସେହି ଆଖିଟା ବହୁତ

ଲାଲ ଦିଶୁଥିଲା । ସେ ଆଖିକୁ ବାରମ୍ବାର ଦଳି ମକଚୁଥିଲା । ଅସହ୍ୟ ଯନ୍ତ୍ରଣା ବି ହେଉଥିଲା । ତା' ମାଆ ବୁଝେଇଥିଲେ, କିନ୍ତୁ ସେ ତାଙ୍କ କଥାକୁ ନମାନି ପଟିକୁ ଖୋଲି ଫୋପାଡ଼ି ଦେଇ ସ୍କୁଲକୁ ଆସିଥିଲା । କିଛି ସମୟ ପରେ ସେ ଅନୁଭବ କଲା ଯେ ମାଆଙ୍କ କଥା ନମାନି ସେ ମସ୍ତବଡ଼ ଭୁଲ୍ କରି ସାରିଛି । ତା' ଆଖିର ଯନ୍ତ୍ରଣା ଧୀରେ ଧୀରେ ବଢୁଥିଲା । ତେଣୁ ସେ ଆଖି ଉଠେଇ କାହାରିକୁ ଚାହିଁପାରିଲା ନାହିଁ । ଶ୍ରେଣୀରେ ବସି ବହି ଓ ଖାତାକୁ ଦେଖେ ତ, ତାକୁ ସବୁ ଓଲଟ ପାଲଟ ଦିଶିଲା । ବାହାରକୁ ଆସିଲା ବେଳକୁ ଖରାବାଜି ଆଖିଟା ଅଧିକ ପୋଡ଼ିଲା । କିନ୍ତୁ ସେ ସମଦର୍ଶୀକୁ କିଛି କହିବାକୁ ସୁଯୋଗ ନଦେବା ପାଇଁ ଜିଦ୍‌ରେ ଅଟଳ ରହିଥାଏ ।

ସତୀଶ ଆଖି ଝପଝପ କରି ଚାହୁଁଥିବା ଦେଖି ବଂଶୀ ମୁରୁକି ହସୁଥିଲା । ସତୀଶକୁ ଲାଗୁଥିଲା ସତେ ଯେମିତି ବଂଶୀର ହସ ଭିତରୁ ଶବ୍ଦ ବାହାରୁଛି । ସେ ଶବ୍ଦକୁ କେବଳ ସିଏ ହିଁ ଶୁଣିପାରୁଛି । ସତୀଶର ସାଙ୍ଗମାନେ ତାକୁ ଉସୁକେଇ ଦେଇ କହିଲେ, "ଆରେ ସତୀଶ, ତୁ ତ ଆମମାନଙ୍କୁ ଆଶ୍ଚର୍ଯ୍ୟ କରିଦେଲୁ । ଏତେ ଶୀଘ୍ର ଆଖିରୁ ପଟିକୁ ଖୋଲି ପକେଇଲୁ ? ଯଦି କିଛି ହୋଇଯାଏ, କ'ଣ କରିବୁ ?

ସତୀଶ ତା' ଆଖିକୁ ଚାପିଧରି କହିଲା, "କିଛି ବି ହୋଇଯାଉନା !"

ତାପରେ ସତୀଶ ସାରାଦିନ ବେଖାତିର ମନରେ ବୁଲିଲା । ଘରକୁ ଫେରିଲାବେଳକୁ ତା' ଆଖିଟା ଫୁଲି ବନ୍ଦ ହୋଇଯାଇଥିଲା ।

ଚବିଶ ଘଣ୍ଟା ପଦାରେ ବୁଲି ବୁଲି ଯନ୍ତ୍ରଣାରେ ଛଟପଟ ହୋଇ ଶେଷରେ ସେ ଯାଇ ବିଛଣାରେ ପଡ଼ିରହିଲା । ଶେଷରେ ତା'ର ଚେତା ବୁଡ଼ିଗଲା । କେତେବେଳେ ତା'ର ବାପା-ମାଆ ଆସିଲେ, କେତେବେଳେ ଡାକ୍ତରବାବୁଙ୍କୁ ଡକେଇଲେ ; କେମିତି ଆଉ ଥରେ ତା' ଆଖିରେ ପଟି ବନ୍ଧାଗଲା, ସେ କିଛି ଜାଣିପାରିଲା ନାହିଁ । ତାକୁ ଲାଗୁଥିଲା, ସେ ଶୋଇନାହିଁ କି ଚେଇଁନାହିଁ । ଅନ୍ୟ କେଉଁ ଦୁନିଆର ଶବ୍ଦ ତା' କାନକୁ ଶୁଣାଯାଉଥିଲା । କିନ୍ତୁ ସେ ଶବ୍ଦଗୁଡ଼ାକ ତାକୁ ପରିଚିତ ଲାଗୁଥିଲା । ଚେତା ଫେରିବାରୁ ସେ ଜାଣିଲା, ତା' ବାପାଙ୍କର ବନ୍ଧୁ ଡାକ୍ତର ମଉସା ଆସି ତା'ର ଚିକିତ୍ସା କରୁଛନ୍ତି । ସେ ବାପାଙ୍କ ଉପରେ ବିରକ୍ତ ହୋଇ କହୁଥିଲେ, "ତମେ ଏତେ ଦାୟିତ୍ୱହୀନ ମଣିଷ ? ଭାଉଜଙ୍କ ଉପରେ ଦାୟିତ୍ୱ ଛାଡ଼ିଦେଇ ପିଲାଟା କଥାକୁ ଭୁଲିଗଲ ? ଭାଉଜ ସେ ଦାୟିତ୍ୱକୁ ବି ଠିକ୍ ଭାବରେ ତୁଲେଇ ପାରିଲେ ନାହିଁ । ଏବେ କଷ୍ଟ ଭୋଗକର । ଭଗବାନଙ୍କୁ ପ୍ରାର୍ଥନା କର, ଅପରେସନ୍‌ଟା ସଫଳ ହେଉ ।"

ଅପରେସନ କଥା ଶୁଣି ମାଆ ଚମକି ପଡ଼ିଲେ । ଡାକ୍ତର ମଉସା କହିଲେ, ହଁ ଭାଉଜ, କାଲି ସକାଳେ ଅପରେସନ ହେବ । ଅପରେସନ କଥା ଶୁଣି ବାପା ବି ବ୍ୟସ୍ତ ହୋଇପଡ଼ିଲେ । ଡାକ୍ତର ମଉସା ବୁଝେଇଦେଲେ, "ସତୀଶର ଆଖିର ଝିଲିରୁ ରକ୍ତ ଝରୁଛି, ଯାହାକି ଜୀବନ ପ୍ରତି ବିପଦ ହୋଇପାରେ ।"

ଡାକ୍ତରବାବୁଙ୍କ କଥା ଶୁଣି ସତୀଶ କାନ ଭିତରେ ଘଣ୍ଟ ବାଡ଼େଇ ହେଲା – "ବଡ଼ ବିପଦ

ହୋଇପାରେ ।'' ହେ ଭଗବାନ ! ଏବେ ମୁଁ କ'ଣ କରିବି ? ତେବେ ମୁଁ କ'ଣ ସତରେ ବଂଶୀ ଭଳି ସମଦର୍ଶୀ ହୋଇଯିବି ? ତାହେଲେ ତା'ର ଅଭିଶାପ ମୋ ଉପରେ ପଡ଼ିଛି କି ? ସେଇଥିପାଇଁ ମୋ ଆଖିରେ ଆଘାତ ଲାଗିଲା । କିନ୍ତୁ ନା, ସେ କାହିଁକି ଅଭିଶାପ ଦେବ ? ମୁଁ ସିନା ସବୁବେଳେ ତାକୁ ଚିଡ଼େଇ ହଇରାଣ କରୁଥିଲି । ସିଏ ତ ମାତ୍ର ଥରେ ମୋତେ ଚିଡ଼େଇଛି । ଦ୍ୱିତୀୟବାର ସେ କେବଳ ମୁରୁକି ମୁରୁକି ହସିଥିଲା । ମୁଁ ଯଦି ତାକୁ ଆଗ ଚିଡ଼ାଇନଥାନ୍ତି, ସେ ମୋତେ କାହିଁକି ଚିଡ଼େଇଥାନ୍ତା ? ବଂଶୀ ସବୁବେଳେ ତା'ର ସହନଶୀଳତା ଗୁଣରେ ତାକୁ ସହିଯାଉଥିଲା । କିନ୍ତୁ ମୁଁ ! ମୁଁ ହିଁ ଭୁଲ୍ କରିଛି । ତା' ଭଳି ମୁଁ ଯଦି ଦୁଇ-ଚାରି ଦିନ ସହିଯାଇଥା'ନ୍ତି, ଆଖିର ପଟି ଖୋଲି ନ'ଥାନ୍ତି ! ଏବେ ଅପରେସନ ପରେ ଯଦି ଆଖିଟା ପୂରା ନଷ୍ଟ ହୋଇଯାଏ ତ ... !

ସତୀଶ ଏହିପରି ଭାବୁଭାବୁ ଶୋଇପଡ଼ିଲା । ସକାଳେ ତା'ର ଡାକ୍ତରଖାନା ଯିବାର ପ୍ରସ୍ତୁତି ଚାଲିଥାଏ । ସବୁ ଜାଣିଲେ ବି ସେ କାହାରିକୁ କିଛି କହିପାରିଲା ନାହିଁ କିମ୍ବା ପଚାରିଲା ନାହିଁ ।

ସତୀଶର ଆଖି ଅପରେସନ ସଫଳ ହେଲା । ଡାକ୍ତରବାବୁ ତା' ବାପାଙ୍କୁ ସଫଳତା ପାଇଁ ଅଭିନନ୍ଦନ ଜଣାଇ କହିଲେ, ''ଭଗବାନ ଆମ ଉପରେ ସଦୟ ଅଛନ୍ତି । ଅପରେସନ ତ ସଫଳ ହୋଇଗଲା, କିନ୍ତୁ ପନ୍ଦର ଦିନ ପାଇଁ ଏ ପଟି ଖୋଲିବାକୁ ଦେବେ ନାହିଁ ।''

ଖୁସିହୋଇ ବାପା ତାଙ୍କୁ କିଛି କହିବାକୁ ଯାଉଥିଲେ, ସତୀଶ ମଝିରେ କହିଲା, ''ମୁଁ କଥା ଦେଉଛି, ଡାକ୍ତର ମଉସା ! ଆପଣଙ୍କ ଅନୁମତି ନପାଇଲେ ଏ ପଟିକୁ ମୁଁ ମୋଟେ ଖୋଲିବି ନାହିଁ ।''

ଡାକ୍ତରବାବୁ କହିଲେ, ''ତୋ ଉପରେ ମୋ ଭରସା ତ ଅଛି । କିନ୍ତୁ ତୁ ଗୋଟାଏ ଦୁଷ୍ଟପିଲା । ତେଣୁ ... ।''

ସତୀଶ କହିଲା, ''ନାଇଁ ମଉସା ! ମୁଁ ତା'ର କୁଫଳ ପାଇସାରିଲିଣି । ଆଉ ସେମିତି କେବେ କରିବି ନାହିଁ ।''

ଡାକ୍ତର ବାବୁ ଅଳ୍ପହସି ମୁଣ୍ଡ ହଲେଇଦେଲେ । ତା'ପରେ ସେ ତା' ବାପାଙ୍କୁ ଆଖିର ଯତ୍ନ ବିଷୟରେ ବୁଝେଇ ଚାଲିଲେ ।

ଯେତେଦିନ ପର୍ଯ୍ୟନ୍ତ ସତୀଶର ଆଖି-ପଟି ବନ୍ଧା ହୋଇ ରହିଲା, ସେ ସେହି ସମୟରେ ବିଭିନ୍ନ ପ୍ରକାର ଚିନ୍ତାରେ ବୁଡ଼ି ରହିଲା । ସମଦର୍ଶୀ ନାମ ଏବେ ତାକୁ ବଂଶୀ ନାମରେ ମନେପଡ଼ିଲା ।

ସମ୍ପୂର୍ଣ୍ଣ ସୁସ୍ଥ ହେବାପରେ ସତୀଶ ସ୍କୁଲକୁ ଗଲା । ନିଜର ସାଙ୍ଗସାଥୀଙ୍କ ଠାରୁ ଆଗ ବଂଶୀ ବିଷୟରେ ପଚାରି ବୁଝିଲା ।

ସାଙ୍ଗମାନେ ପୂର୍ବ ଅଭ୍ୟାସ ଅନୁସାରେ କହିଲେ, ''କିଏ ? ଓହୋ, ସେ କଣା ସମଦର୍ଶୀର କଥାକୁ ତୁ କେମିତି ଆଜି ପଚାରୁଛୁ ?''

ସତୀଶ ତାଙ୍କ କଥା ଶୁଣି କହିଲା, "ସାବଧାନ । ଏବେ କେହି ଯଦି ବଂଶୀକୁ କଣା ସମଦର୍ଶୀ ବୋଲି କହେ, ତେବେ ..."

ତା' ପାଟିରୁ କଥା ନସରୁଣୁ, ବଂଶୀ ସେଠାକୁ ଆସୁଥିବାର ଦେଖି ସତୀଶ ଦୌଡ଼ିଯାଇ ତା' ପାଖରେ ପହଞ୍ଚିଗଲା । ତାକୁ କୁଣ୍ଢେଇ ପକାଇ କହିଲା, "ମୋର ପ୍ରିୟ ସାଙ୍ଗ, ବଂଶୀ ! ମୋତେ ତୁ ଆଜି କ୍ଷମା କରିଦେ । ମୁଁ ତତେ ବହୁତ ହଇରାଣ କରିଥିଲି । ଏବେ ଆଉ ତୋତେ କେବେ ବି ଚିଡ଼େଇବି ନାହିଁ ।"

ସତୀଶର ବ୍ୟବହାରରେ ବଂଶୀ ବ୍ୟସ୍ତ ହୋଇ କହିଲା, "କାହିଁକି ? ଆଜି ତୁ କ'ଣ ଭୁଲ କଲୁ କି ?"

ସତୀଶ କହିଲା, "ହଁ, ଭାଇ ! ଏବେ ମୋ ଆଖିରୁ ପଟି ଖୋଲା ହୋଇଯାଇଛି । ମୋ ଆଖି ଉପରେ ଗୋଟାଏ ପରଦା ପଡ଼ିଯାଇଥିଲା । ସେହି ପରଦାଟା ତୋତେ ମୋଠାରୁ ଦୂରେଇ ରଖିଥିଲା । ଏବେ ମୁଁ ଏଇ ନୂଆ ଆଖିରେ କେବଳ ଭଲପାଇବା ହିଁ ଦେଖିପାରୁଛି । ମୋତେ ବିଶ୍ୱାସ କର ବଂଶୀ । ମୋର ଏଇ ନୂଆ ଆଖିରେ ଦେଖ । କ'ଣ ଏଥିରେ ତୁ ନିଜେ ହିଁ ଦେଖାଯାଉନୁ ?"

"ହଁ, ସତୀଶ, ତୁ ଠିକ୍ କଥା କହୁଛୁ ।" ଭାବବିହ୍ୱଳ ହୋଇ ବଂଶୀ ସତୀଶକୁ କୁଣ୍ଢାଇପକାଇଲା ।





# ମୁକ୍ତି ଅଭିଯାନ

ଗାଆଁ ସରପଞ୍ଚଙ୍କ ପୁଅ ମୋହନ ଓ ଶିକ୍ଷକଙ୍କ ପୁଅ ବିନ୍ଦାଙ୍କ ଭିତରେ ଗଭୀର ବନ୍ଧୁତା ଥିଲା । ସେମାନେ ସାଥୀ ହୋଇ ପଢ଼ାଲେଖା ଓ ଖେଳକୁଦ କରୁଥିଲେ । ସଂଜବେଳକୁ ଦୁହେଁ ବାହାରକୁ ବୁଲିଯାଉଥିଲେ । କେତେବେଳେ ପୋଖରୀ କୂଳରେ ଯାଇ ବସୁଥିଲେ ତ କେତେବେଳେ ବେଙ୍ଗ ଓ ମାଛଙ୍କର ଖେଳ ଦେଖୁଥିଲେ । କେବେ ଆଖପାଖରେ ରଙ୍ଗବେରଙ୍ଗ ପ୍ରଜାପତିମାନଙ୍କୁ ଧରୁଥିଲେ । ପୁଣି କେବେ ଫୁଲ ତୋଳୁଥିଲେ । ବେଳେବେଳେ ମନହେଲେ ସେମାନେ ଦୂର ବିଲ ପଡ଼ିଆକୁ ବୁଲି ଯାଉଥିଲେ ।

ଚାରିଆଡ଼େ ଶାଗୁଆ ଫସଲର କ୍ଷେତ, ତା' ଭିତରେ ଲମ୍ବା ଲମ୍ବା ହିଡ଼ । ବୁଲିବାବେଳେ ପବନରେ ମାଟି ଆଉ ଫସଲ ଫୁଲର ବାସ୍ନା ମହମହ ହୋଇ ଭାସିଆସୁଥାଏ । ଧୂଳି ଉଡ଼େଇ ଗୋରୁଗୋଠ ଯାଉଥିବାର ଦୃଶ୍ୟ ଆଉ ତାଙ୍କ ଗଳାରେ ବନ୍ଧା ହୋଇଥିବା ଘଣ୍ଟିର ଠନ୍ ଠନ୍ ଶବ୍ଦ ମନକୁ ଆନନ୍ଦ ଦେଉଥାଏ ।

ଏସବୁ ଦେଖି ଦିନଯାକ ପରିଶ୍ରମ କରିଥିବା ଲୋକର ସବୁ ଥକ୍କା ଦୂର ହୋଇଯାଏ । ତାଙ୍କୁ ବଡ଼ ମଜା ଲାଗୁଥାଏ ।

ଆଜି ବି ଦୁଇଜଣ ସାଙ୍ଗ କାନ୍ଧରେ ହାତ ପକାଇ ଗାଆଁଠାରୁ ଦୁଇ କିଲୋମିଟର ଦୂର କ୍ଷେତ ଆଡ଼କୁ ବାହାରିଗଲେ । ସହର ଆଡ଼କୁ ଯାଇଥିବା ଗୋଡ଼ିମାଟିର କଚାରାସ୍ତା ଉପରେ ପିଚୁ ପଡୁଥାଏ । ତା' ପାଖରେ ଗୋଟାଏ ଚଉତରା ଚାନ୍ଦିନୀ ଥିଲା, ଯେଉଁଠି ଲୋକମାନେ ବସି ଆରାମ କରନ୍ତି । ସେମାନେ ବି କେତେଥର ସେଇଠି ବସି ଗପସପରେ ମାତିଛନ୍ତି । ନିମ୍ବଗଛର ଥଣ୍ଡା ଛାଇ ତଳେ ଚାନ୍ଦିନୀ ଉପରେ ବସିଲେ ବଡ଼ ମଜା ଲାଗେ ।

ଆକାଶରେ ମେଘ ଥିବାରୁ ସେଦିନ ଶୀଘ୍ର ସଞ୍ଜ ମାଡ଼ିଆସିଲା । ସେ ଦୁଇସାଙ୍ଗ ଫେରିବାକୁ

ଲାଗିଲେ । ପାଞ୍ଚଦଶ ପାଦ ସେମାନେ ଆଗକୁ ଆସିଛନ୍ତି, ଏକ ସ୍ୱର ସେମାନଙ୍କ କାନରେ ବାଜିଲା, "ଶୁଣ, ଶୁଣ –"

ସେମାନେ କାନପାରି ଚାରିଆଡ଼କୁ ଚାହିଁଲେ । କିନ୍ତୁ ସେଠାରେ କେହି ନଥିଲେ । ମୋହନ କହିଲା, "ତତେ କିଛି ଶବ୍ଦ ଶୁଣାଗଲା କି ?"

ବିନ୍ଦା କହିଲା, "ହଁ, କେହି ତ ଦେଖାଯାଉ ନାହାନ୍ତି । କିନ୍ତୁ ଶବ୍ଦ ତ ବହୁତ ପାଖରୁ ଆସୁଥିଲା । ତାହେଲେ କ'ଣ ଆମ କାନରୁ ଏ ଶବ୍ଦ ବାହାରୁଛି ନା କ'ଣ ?"

"ଶୁଣ–ଶୁଣ" ଶବ୍ଦ ପୁଣି ଶୁଣାଗଲା ।



ବିନ୍ଦା ଡରିଗଲା । "ଏଇଟା ନିଶ୍ଚୟ କୌଣସି ଭୂତର ସ୍ୱର ହୋଇଥିବ । ଚାଲ ଶୀଘ୍ର ଏଠୁ ଦୌଡ଼ି ପଳାଇବା ।"

"ମୁଁ ଭୂତ ନୁହେଁ, ମୁଁ ଭୂତ ନୁହେଁ ।"

ବାରମ୍ବାର ଏଇ କଥା ତାଙ୍କ କାନରେ ବାଜିଲା ।

ନିମ୍ବଗଛର ଛୋଟିଆ ଡାଳ ଖଣ୍ଡେ ଭାଙ୍ଗିପଡ଼ି ମୋହନ କାନ୍ଧ ଉପରେ ପଡ଼ିଲା । ସିଏ ବି ଡରିଗଲା । ମନରେ ସାହସ ବାନ୍ଧି ସେ ଜୋରରେ କହିଲା, "ଭୂତ ନୁହେଁ ତ ତୁ କିଏ ? ଅଦୃଶ୍ୟ ହୋଇ ଆମକୁ ଡରାଉଛୁ କାହିଁକି ?"

"ମୁଁ ଅଦୃଶ୍ୟ ହେବି କାହିଁକି ? ମୁଁ ତ ତମରି ପାଖରେ ଅଛି, ଏକଦମ୍ ପାଖରେ । ତମେ ମୋତେ ହାତରେ ଛୁଇଁ କରି ଦେଖିପାରିବ ।"

ମୋହନ ଓ ବିନ୍ଦା କୌତୁହଳ ପୂର୍ବକ ଏଣିକି ତେଣିକି ଚାହିଁଲେ । କିନ୍ତୁ ଆଖପାଖରେ ଗଛ ଓ ବୁଦା ବ୍ୟତୀତ ତାଙ୍କୁ ଆଉ କିଛି ଦେଖାଗଲା ନାହିଁ ।

ପବନ ସୁ ସୁ ହୋଇ ବହୁଥିଲା । ଗଛଗୁଡ଼ିକର ପତ୍ର ପବନରେ ହଲି ଖନ୍ ଖନ୍ ହେଉଥିବା ଶବ୍ଦ ପିଲାଙ୍କୁ ଡରେଇବା ପାଇଁ ଯଥେଷ୍ଟ ଥିଲା । ଦୁହେଁ ଭୟରେ ଦୌଡ଼ିବାରେ ଲାଗିଲେ ।

ନିଜ ନିଜ ଘରେ ପହଞ୍ଚି ସେମାନେ ଥକ୍କା ମାରିଲେ । ସେମାନେ ଭାବିଲେ, "ବାପରେ ବାପ, କି ରହସ୍ୟମୟ ସ୍ୱର ! ନିଶ୍ଚୟ ସେ କୌଣସି ଗୋଟାଏ ଭୂତର ସ୍ୱର ଥିଲା । ନହେଲେ ସେ ଆମ ଆଗକୁ ଆସିଲା ନାହିଁ କାହିଁକି ?"

ରାତିସାରା ଦୁହେଁ ଅଜବ ସ୍ୱପ୍ନ ଦେଖି ଚାଲିଲେ । କେବେ ତାଙ୍କୁ ବଡ଼ ବଡ଼ ଦାନ୍ତବାଲା ବିକଟାଳ ମଣିଷ ଦେଖାଗଲା ତ, ପୁଣି କେବେ ଘୋଡ଼ା ଉପରେ ବସି ଭୟାନକ ମଣିଷଟା ଉଡୁଥିବାର ଦୃଶ୍ୟ ଦେଖାଗଲା । ବିନ୍ଦା ଭୟରେ ଥରିଲା, ତାକୁ ଅଳ୍ପ ଜ୍ୱର ବି ଆସିଗଲା । ମୋହନ ତାକୁ ଦେଖିବାକୁ ଆସିଥିଲା ।

"ଆମେ ଆଉ କେବେ ସିଆଡ଼େ ଯିବା ନାହିଁ ।" ବିନ୍ଦା ମୋହନକୁ କହିଲା ।

ମୋହନ କହିଲା, "ମୁଁ ତ ଯିବି ।"

"ତୁ ମଧ୍ୟ ମୋ ଭଳି ବେମାର ହୋଇଯିବୁ", ବିନ୍ଦା ତାକୁ ଡରେଇ କହିଲା ।

କିନ୍ତୁ ମୋହନ ଟିକେ ସାହସୀ ବାଳକ ଥିଲା । ଯେଉଁ ସ୍ୱର ସେ ଶୁଣିଥିଲା, ତା'ର ରହସ୍ୟ ଜାଣିବାକୁ ଇଚ୍ଛା ପ୍ରବଳ ହେଲା ।

ସଂଧ୍ୟା ହେବାରୁ ମୋହନ ଏକା ଏକା ବୁଲିବାକୁ ବାହାରିପଡ଼ିଲା । ଯେଉଁ ଜାଗାରେ ସେ ରହସ୍ୟମୟ ସ୍ୱର ଶୁଣିଥିଲା, ସେଠାରେ ଯାଇ ପହଞ୍ଚିଗଲା । ସେଠାରେ ଆଜି ବି ଶୂନ୍‌ଶାନ୍ ଥିଲା । ରାସ୍ତା ତିଆରି କରୁଥିବା ଶ୍ରମିକମାନେ ବହୁତ ଦୂରକୁ ଚାଲିଯାଇଥିଲେ ।



ଚାନ୍ଦିନୀ ଉପରେ ବସି ସେ ଚାରିଆଡ଼କୁ ଚାହିଁଲା । ଠିକ୍ ସେତିକିବେଳେ ଶୁଣାଗଲା, "ଶୁଣ, ଶୁଣ ।"

ମୋହନ ଉଚ୍ଚ ସ୍ୱରରେ କହିଲା, "ତୁ କିଏରେ ? ମୋ ଆଗକୁ ଆସୁନାହୁଁ କାହିଁକି ?"

ତାପରେ ଖନଖନ କଥା ଶୁଭିଲା, "ମୁଁ ହେଉଛି ନିମ୍ବଗଛ । ତୁମେ ତ ମୋ ପାଖରେ ଠିଆ ହୋଇଛ ।"

ମୋହନ ଆଶ୍ଚର୍ଯ୍ୟ ହୋଇ ଉପରକୁ ଚାହିଁ କହିଲା, "ଆରେ, ନିମ୍ବଗଛ ପୁଣି କଥା କହୁଛି ।"

"ହଁ, ମୁଁ କହୁଛି ।"

"କ'ଣ ଚାହୁଁଛ ତମେ ?"

"ମୋତେ ଶତ୍ରୁ କବଳରୁ ରକ୍ଷାକର ।"

"ଶତ୍ରୁମାନେ କିଏ ?"

"ତମେ କ'ଣ ଦେଖିପାରୁ ନାହଁ, ମୋର ଅବସ୍ଥା କେମିତି ହୋଇଛି ? ପ୍ରଥମେ ସେମାନେ ମୋ ଦେହରେ ଥିବା ଛାଲିକୁ କାଢ଼ି ନେଇଥିଲେ । ତାପରେ କିଛି ଡାଳ ଭାଙ୍ଗି ନେଇଗଲେ । ଏବେ ମୋର ଗଣ୍ଡିକୁ ସେମାନେ କାଟୁଛନ୍ତି, ଯାହାଦ୍ୱାରା ମୁଁ ତଳେ ଗଡ଼ିପଡ଼ିବି, ଆଉ ସେମାନେ ମୋତେ ନେଇ ବିକ୍ରି କରି ଧନୀ ହେବେ ।"

"ସେମାନେ ପୁଣି କିଏ ?"

"ସେମାନେ ତ ରାମଦୀନ ଠିକାଦାରଙ୍କ ଲୋକ ।" ନିମ୍ବଗଛ ଉଦାସ ସ୍ୱରରେ କହିଲା, "ସେମାନେ ଆଜି ରାତିକୁ ପୁଣି ଆସିବେ । କିଛିଦିନ ପରେ ତୁମେ ମୋତେ ଆଉ ଏଠି ଦେଖିବାକୁ ପାଇବ ନାହିଁ । ଦିନ ଆସିବ, ଏହି ସବୁଜ ଜଙ୍ଗଲଟା ଗୋଟାଏ ଖୋଲା ପଡ଼ିଆରେ ପରିଣତ ହୋଇଯିବ । ମୋ ମନରେ ଏଥିପାଇଁ ଦୁଃଖ ଭରିଯାଇଛି କି, ତୁମର ବାପା ସରପଞ୍ଚ ହୋଇବି ଆମ ଗଛବୃଛଙ୍କ ଚିନ୍ତା କରୁନାହାନ୍ତି । ଆମେ ମଣିଷମାନଙ୍କ ପାଇଁ କେତେ ଉପକାରୀ, ସେକଥାକୁ କେହି ବି ଭାବିପାରୁ ନାହାନ୍ତି । ଦେଖ, ମୁଁ ଟାଣ ଖରାରେ ଛଟପଟ ହେଉଥିବା ଲୋକଙ୍କୁ କେମିତି ଶୀତଳ ଛାୟା ଦେଉଛି । ଶୁଦ୍ଧ ଅମ୍ଳଜାନ ଯୋଗାଉଛି । ମୋର ସରୁ କାଠିକୁ ନେଇ ଲୋକେ କେମିତି ଦାନ୍ତକୁ ସଫା କରନ୍ତି, ଆଉ ମୁଁ ତାଙ୍କ ଦାନ୍ତକୁ କେମିତି ସୁରକ୍ଷା ଦିଏ, ସେ କଥା ତ ତମେ ଜାଣିଛ । ଆମରି ପାଇଁ ପରିବେଶ ସ୍ୱଚ୍ଛ ରହେ ।"

"ଆମେ ପଶୁପକ୍ଷୀ ଓ ମଣିଷମାନଙ୍କର କେତେ ଅସୁବିଧା ଦୂର କରିଥାଉ । ଆକାଶର ମେଘକୁ ଆକର୍ଷିତ କରି ପୃଥିବୀ ଉପରେ ବର୍ଷା କରାଉ । ଖାଲି ସେତିକି ନୁହେଁ, ବର୍ଷା ପାଣିକୁ ମାଟି ଭିତରେ ସଞ୍ଚୟ କରି ରଖିବା କାମ ଆମେ କରିଥାଉ । ଆମେ ନରହିଲେ ଏ ସବୁଜ ଧରଣୀ ମରୁଭୂମିରେ ପରିଣତ ହୋଇଯିବ । ଲୋକେ ଖାଦ୍ୟ ଓ ଜଳ ବିନା ମରିଯିବେ । କିନ୍ତୁ ଅଳ୍ପ କେତେଜଣ ଲୋକ ଲୋଭରେ ପଡ଼ି ଆମର ବିନାଶ କରୁଛନ୍ତି । ତମେ ତମର ବାପାଙ୍କୁ ବୁଝାଅ ଆଉ ଆମମାନଙ୍କୁ ବଞ୍ଚାଇ ରଖିବାରେ ସହଯୋଗ କର ।"

ମୋହନ ନିମ୍ବଗଛର କଥା ଶୁଣି ବ୍ୟସ୍ତ ହୋଇ ପଡ଼ିଲା । ସେ ନିମ୍ବଗଛକୁ ନିରୀକ୍ଷଣ କରି ଦେଖିଲା । ସତରେ ତା' ଦେହରୁ କିଏ ଛାଲିକୁ ଛଡ଼େଇ ନେଇଛି । ଡାଳଗୁଡ଼ିକୁ ମଧ୍ୟ ହାଣି ପକେଇଛି । ସେଇଥିପାଇଁ ସେ ଝାଉଁଳି ପଡ଼ି ଶୁଖି ଆସିଲାଣି । ତା' ମୂଳରେ କୁରାଢ଼ିର ଗଭୀର କ୍ଷତ ଦାଗ ମଧ୍ୟ ଦେଖାଯାଉଛି । କେବେ ଯଦି ଝଡ଼ କି ତୋଫାନ ଆସେ, ତେବେ ସେ ନିଶ୍ଚୟ ମୁହଁ ମାଡ଼ି ତଳେ ଗଡ଼ି ପଡ଼ିବ ।

ମୋହନ କହିଲା, "ମୁଁ ବାପାଙ୍କୁ ବୁଝେଇବି ଆଉ ତମକୁ ନିଶ୍ଚୟ ସୁରକ୍ଷା ଦେବି । ତମର ଆଉ କେହି କିଛି କ୍ଷତି କରିପାରିବେ ନାହିଁ ।"

ନିମ୍ବଗଛ ଝୁମ୍ ଝୁମ୍ କରି ହଲିବାକୁ ଲାଗିଲା । କିଛି ପତ୍ର ଝଡ଼ିପଡ଼ି ମୋହନର ମଥାରେ ପଡ଼ିଲା । ମୋହନ ଅନୁଭବ କଲା ନିମ୍ବଗଛ ତା' କଥା ଶୁଣି ଖୁସିରେ ତାକୁ ଆଶୀର୍ବାଦ ଦେଉଛି ।

ମୋହନର ବାପା ତା'ଠାରୁ ସବୁକଥା ଶୁଣିସାରି ବଡ଼ ଗମ୍ଭୀର ହୋଇ କହିଲେ, "ଆରେ, ମୋହନ ! ତୁ କେବଳ ପାଠପଢ଼ାରେ ମନ ଧ୍ୟାନ ଲଗାଇ ରଖ । ତୁ ଏ କି କଥା କହୁଛୁ ? ନିମ୍ବଗଛ କ'ଣ କେବେ କଥା କହେ ?"

ନିଜ ବାପାଙ୍କ ବ୍ୟବହାର ଦେଖି ମୋହନକୁ ଭଲ ଲାଗିଲା ନାହିଁ । ସେ ମନେପକାଇଲା ରାମଦୀନ ଠିକାଦାର ତା' ବାପାଙ୍କର ଜଣେ ଅତିପ୍ରିୟ ବନ୍ଧୁ । ଦୁଇଜଣ ମିଶି ଘଣ୍ଟା ଘଣ୍ଟା ଧରି ତାସ୍ ଖେଳନ୍ତି । ଦୁହେଁ ଦୁହିଁଙ୍କୁ ବହୁତ ପସନ୍ଦ କରନ୍ତି । ସେଇଥିପାଇଁ ସେ ଠିକାଦାର ବିରୋଧରେ କିଛି ବି କରିବେ ନାହିଁ ।



ତାପରେ ସେ ଠିକ୍ କଲା, ‘‘ମୁଁ ନିଜେ ବିନ୍ଦା ସାଙ୍ଗରେ ମିଶି କିଛି ଗୋଟାଏ ବ୍ୟବସ୍ଥା କରିବି ।’’

ବିନ୍ଦା ଅବଶ୍ୟ ଡରୁଆ ପିଲା ଥିଲା । ଦୁଇଦିନ ତଳେ ସେ ଜରରୁ ଉଠିଥାଏ । ମୋହନ ଯାଇ ତାକୁ ଯେତେବେଳେ ନିମ୍ବଗଛ କଥା କହିଲା ତାହା ଶୁଣି ବିନ୍ଦା ଆହୁରି ଡରିଗଲା । ତରବର ହୋଇ କହିପକାଇଲା, ‘‘ନାଇଁ ଭାଇ ! ମୁଁ ଆଉ ସେଆଡ଼େ ଯିବିନାହିଁ । ସେଠିକି ଗଲେ ଆମେ ବା କ’ଣ କରିପାରିବା ?’’ ବିନ୍ଦା ଅପରାଧୀ ଭଳି ନିଜର ଦୁଇକାନରେ ହାତ ଦେଇଦେଲା ।

ମୋହନ କହିଲା, ‘‘ଆରେ ଆମେ ବି ବହୁତ କିଛି କରିପାରିବା । ଲକ୍ଷ୍ୟ ଆଉ ଉଦ୍ଦେଶ୍ୟ ମନରେ ଠିକ୍ ଭାବରେ ରହିଲେ କାମଟା ସହଜ ହୋଇଯାଏ । ମୋତେ ଏହି କାମରେ ତୋର ସହଯୋଗ ଦରକାର । କଥାରେ ଅଛି ପରା, ଯୋଡ଼ାକୁ ଘୋଡ଼ା ସରି ନୁହେଁ । ଶୁଣ, ଆମକୁ ଭୂତ ହେବାକୁ ପଡ଼ିବ ।’’

ଭୂତ ନାଆଁ ଶୁଣି ଭୟରେ ବିନ୍ଦାର ଦାନ୍ତ ଠକଠକ ହୋଇ ବାଜିଲା ।

‘‘ଆରେ, ରାମଲୀଳା ପାଇଁ ମାଙ୍କଡ଼ ମୁଖା ଆଉ ଲମ୍ବା ଚୁଟି ଆମ ନାଚ ଶିକ୍ଷକଙ୍କ ବାକ୍ସରେ ଅଛି । ତାକୁ ନେଇଆସିଲେ ଆମର କାମ ହୋଇଯିବ । ତାପରେ ଆମେ ମଜା ଦେଖିବା ।’’

ପ୍ରଥମେ ନା, ନା କହୁଥିଲା ସିନା, ପରେ ବିନ୍ଦା ସେଥିରେ ରାଜି ହୋଇଗଲା ।

ସେଦିନ ଅମାବାସ୍ୟାର ଘନ ଅନ୍ଧକାର ଚାରିଆଡ଼େ ବିଛେଇ ହୋଇପଡ଼ିଥାଏ । ସୁ ସୁ ହୋଇ ପବନ ବହୁଥାଏ ।

ମୋହନ ଓ ବିନ୍ଦା ଗୋଟା ବୁଦାମୂଳେ ଲୁଚି ବସିଥା’ନ୍ତି । ତାଙ୍କର ଏପାଖ ସେପାଖରେ ଧାଡ଼ି ଧାଡ଼ି ନିମ୍ବଗଛ ଠିଆ ହୋଇଥା’ନ୍ତି ।

ଏହା ଭିତରେ ତିନିଘଣ୍ଟା ବିତିଗଲା । ତଥାପି କୌଣସି କାଠଚୋର ସେଠାକୁ ଆସିଲେ ନାହିଁ କିମ୍ବା କୌଣସି କୁରାଢ଼ି ଚୋଟର ଶବ୍ଦ ବି ଶୁଣାଗଲା ନାହିଁ । ବିନ୍ଦା ବାରମ୍ବାର କହୁଥାଏ, ‘‘ମୋହନ ! ଚାଲ ଘରକୁ ଫେରିଯିବା ।’’

କିନ୍ତୁ ମୋହନ ଧୈର୍ଯ୍ୟ ଧରି ତାକୁ ବୁଝେଇଲା, ‘‘ଯଦି କୌଣସି କାମ କରିବାକୁ ନିଶ୍ଚୟ କରାଯାଏ, ତେବେ ବ୍ୟସ୍ତ ହେବା ଉଚିତ ନୁହେଁ ।’’

ନିର୍ଜନ ଅନ୍ଧକାର ରାତିରେ ଦୁଇଜଣ ସାଙ୍ଗ ଏମିତି ଭାବରେ ରହିବା ତାଙ୍କ ପାଇଁ ଥିଲା ପ୍ରଥମ ଅବସର । ତେଣୁ ତାଙ୍କୁ ଟିକେ ଟିକେ ଡର ବି ଲାଗୁଥିଲା । ବେଶି ରାତି ହେବାରୁ ଆଖିକୁ ଏଣେ ନିଦ ମାଡ଼ିଆସୁଥଲା ।

ହଠାତ୍ ମୋହନ ବିନ୍ଦାର ହାତକୁ ଚାପିଦେଇ କହିଲା, ‘‘ଦେଖ, ସେ ଆସୁଛି ! ତୋର ମନେଅଛି ତ ତୋତେ କ’ଣ କରିବାକୁ ହେବ ?’’

ବିନ୍ଦା କହିଲା, "ହଁ, ମନେ ଅଛି । ଇଏ ତ ଗୋଟାଏ ଜିପ୍ ଗାଡ଼ି । ତୋତେ କ'ଣ ତା'ର ଘଡ଼ ଘଡ଼ ଶବ୍ଦ ଶୁଣାଯାଉନାହିଁ କି ?"

ଚାହୁଁ ଚାହୁଁ ଜିପ୍‌ଟା ଆସିଲା । ଅଳ୍ପ ଦୂରରେ ଟିକେ ଅଟକି ଯାଇ ପୁଣି ଅନ୍ଧାର କରି ଚାଲିଗଲା । ଦୂରରେ ଥିବା ଗୀର୍ଜାଘର ଘଣ୍ଟାରେ ଏଗାରଟା ବାଜିବାର ଘଣ୍ଟି ଶବ୍ଦ ଶୁଣାଗଲା ।

ବିନ୍ଦା କିଛି ବୁଝିପାରିଲା ନାହିଁ । ସେ ଠିଆ ହୋଇପଡ଼ି ଚାରିଆଡ଼କୁ ଚାହିଁଲା । ଏତିକିବେଳେ କାହାର ପାଦଶବ୍ଦ ଶୁଣାଗଲା । ଶୁଖିଲା ପତ୍ର ଉପରେ କିଏ ଚାଲିଚାଲି ଯାଉଥିଲା । ଗୋଟାଏ ବଡ଼ ଟର୍ଚ୍ଚର ଆଲୋକ ରହି ରହି ଚମକୁଥିଲା ।

ମୋହନ ଆଖିରେ ବି ଚମକ ଆସିଯାଇଥିଲା । କହିଲା, "ଆରେ ଏ ବିନ୍ଦା, ସେ ଆସିଗଲା । ଏବେ ସାବଧାନ ହୋଇଯା ।"

ସେମାନେ ତିନିଜଣ ଲୋକ ଥିଲେ । ଆଣ୍ଠୁ ପର୍ଯ୍ୟନ୍ତ ସେମାନେ ଧୋତି ଆଉ ଦେହରେ ମଇଳା ଗଞ୍ଜି ପିନ୍ଧିଥିଲେ । ସେମାନଙ୍କ ହାତରେ ଧାରୁଆ କୁରାଢ଼ି ଚମକୁଥିଲା । ସେ ତିନିଜଣ ଚାନ୍ଦିନୀ ଉପରେ ଯାଇ ବସିଲେ । ବିଡ଼ି ଲଗାଇ ଟାଣିଲେ ।

ତାଙ୍କ ଭିତରୁ ଜଣେ କହିଲା, "ଆରେ, ଶୀଘ୍ର କାମ ଶେଷ କର । ଆଜି ଅନେକ ଗଛ କାଟିବାର ଅଛି । ଆମକୁ ପରା ବହୁତ ବଡ଼ ଅର୍ଡ଼ର ମିଳିଛି ।"

ଦ୍ୱିତୀୟ ଲୋକଟି କହିଲା, "ଅର୍ଡ଼ରଟା ବଡ଼ ହେଉ ବା ଛୋଟ ହେଉ, ଲାଭ ତ ରାମଦୀନ ଠିକାଦାରର ହିଁ ହେବ । ଆମେ ତ ପିଲାଛୁଆଙ୍କୁ ଛାଡ଼ି ଏ ଅନ୍ଧାର ରାତିଟାରେ ବେକାରଟାରେ ଖଟୁଛୁ ।"

ତୃତୀୟ ଲୋକଟି କହିଲା, "ଆରେ ଭାଇ ! ଆମେ ଆଉ କ'ଣ କରିବା ? ଦିନରେ ତ ଏ କାମ କରି ହେବ ନାହିଁ । ଶାଗୁଆ–ସୁନ୍ଦର ଗଛ କାଟିବା ତ ମନା ଅଛି ନା !"

ସେମାନେ ଏଭଳି କଥାବାର୍ତ୍ତା ହେଉଥାନ୍ତି । ମୋହନ ଓ ବିନ୍ଦା ପରସ୍ପର ମୁହଁକୁ ଚାହିଁ ରହିଥାନ୍ତି । ବିନ୍ଦା ଘୁଙ୍ଗୁର ମାଳକୁ ଧରିଲା । ମୋହନ ଓସ୍ତପତ୍ରକୁ ଯୋଡ଼ି ଦାନ୍ତରେ କାମୁଡ଼ି ଧରିଲା, ଯେମିତି ସେଥିରୁ ସିସ୍‌କାରୀ ସିଟିର ଶବ୍ଦ ବାହାରି ପାରିବ । ତାପରେ ଦୁହେଁ ମିଶି ଓଠକୁ ଗୋଲ କରି ସିଟି ବଜେଇଲେ । ପ୍ରଥମେ ତ ଧୀରେଧୀରେ, ତାପରେ ଜୋର ଶବ୍ଦ ଶୁଣାଯିବାରୁ ସେ ଲୋକମାନେ ଭୟଭୀତ ହୋଇଗଲେ । ତାଙ୍କ ଭିତରୁ ଜଣେ କହିଲା, "ବ୍ରହ୍ମରାକ୍ଷସ କି ଡାହାଣୀ ଆସିଗଲେ ନା କ'ଣ ?"

ଆଉ ଜଣେ ଲୋକ ଟର୍ଚ୍ଚମାରି ଏପଟ ସେପଟ ଦେଖିବା ଆରମ୍ଭ କରିଦେଲା । କିନ୍ତୁ ତାକୁ କିଛି ଦେଖାଗଲା ନାହିଁ । କେବଳ ବୁଦା ଭିତରୁ ବାହାରୁଥିବା ଶବ୍ଦ ତାଙ୍କୁ ଶୁଣାଯାଉଥିଲା । ଜଣେ ଲୋକ କହିଲା, "ଆରେ, ଚାଲ ଏଠୁ ଶୀଘ୍ର ପଳେଇଯିବା ।"

ଆଉଜଣେ ସାହସର ସହିତ କହିଲା, "ଡରିବାର କିଛି ନାହିଁ । କିଛି ନାହିଁ ମ ! ବୁଦା ସେ

ପଟରେ ନିଶ୍ଚୟ କିଛି ଗୋଟାଏ ଅଛି, ଚାଲ ସେପଟକୁ ଯାଇ ଆଗ ଦେଖିବା ।"

ତିନିଜଣ ଲୋକ ନିଃଶ୍ୱାସ ବନ୍ଦକରି ଆଗକୁ ଚାଲିଲେ । ମୋହନ ଆଉ ବିନ୍ଦା ସାବଧାନ ହୋଇଗଲେ । ଲୋକମାନେ ଯେମିତି ବୁଦା ପାଖକୁ ଆସିଛନ୍ତି, ଦୁଇସାଙ୍ଗ ଚାଉଁଚାଉଁ ଚିତ୍କାର କରି ତାଙ୍କ ଆଗକୁ ଡେଇଁ ପଡ଼ିଲେ । ସେମାନେ ଲମ୍ବା ଚୁଟି ଆଉ ମାଙ୍କଡ଼ ମୁଖା ତ ପିନ୍ଧିଥିଲେ । ତେଣୁ ସେମାନେ ଅନ୍ଧାରରେ ଅତି ଭୟଙ୍କର ଦିଶୁଥିଲେ । କାଳେ କିଏ ତାଙ୍କୁ ଟର୍ଚ୍ଚ ମାରି ଚିହ୍ନି ପକାଇବ, ସେକଥା ଭାବି ମୋହନ ଆଗ ଟର୍ଚ୍ଚ ଧରିଥିବା ଲୋକ ଉପରକୁ ଡେଇଁପଡ଼ି ତା' ହାତରୁ ଟର୍ଚ୍ଚ ତଳେ ପକାଇଦେଲା । ଏବେ ଚାରିଆଡ଼େ ଘନ ଅନ୍ଧାର ଦିଶିଲା ।

ତିନିଜଣ ଲୋକ ଭୟରେ ଥରୁଥିଲେ । ତାଙ୍କର ପାଟି ଖନି ବାଜିଗଲା । ସେମାନେ ନିଜ ନିଜର ଦୁଇହାତ ଯୋଡ଼ି କହୁଥିଲେ, "ଆମକୁ ଏଥର କ୍ଷମା କରିଦିଅ ... କ୍ଷମା କରିଦିଅ ।"

ମୋହନ ମୁହଁରେ ହାତ ରଖି ଗମ୍ଭୀର କଣ୍ଠରେ କହିଲା, "ତମର ଯଦି ଜୀବନ ପ୍ରତି ଲୋଭ ଅଛି, ଶୀଘ୍ର ଏଠୁ ପଳା । ଏକମୁହାଁ ହୋଇ ଘରକୁ ଦୌଡ଼ । ପଛକୁ ବୁଲି ଚାହିଁବ ନାହିଁ । ନହେଲେ ତମେ ସବୁ ଅନ୍ଧ ହୋଇଯିବ । ସାବଧାନ । ନିଜ ନିଜର କାନକୁ ଧରି ଦୌଡ଼ ।"

ଜୀବନ ବିକଳେ ସେ ତିନିଜଣ ଲୋକ ନିଜ ନିଜର କାନକୁ ଧରି ଭୟରେ ଥରୁଥିଲେ । ଏଣିକି ତେଣିକି ଚାହିଁ ଯିଏ ଯୁଆଡ଼େ ଧାଇଁଲେ । ଆଉ ପଛକୁ କେହି ଚାହିଁଲେ ନାହିଁ । ତାଙ୍କର କୁରାଢ଼ି ଆଉ ଟର୍ଚ୍ଚ ସେଇଠି ପଡ଼ିରହିଲା । ଘୁଙ୍ଗୁରର ରୁଣୁଝୁଣୁ ଶବ୍ଦ ଆଉ ବିକଟାଳ ହସ ତାଙ୍କ ପିଠିରେ ଚାବୁକ ମାରିବା ଭଳି ଲାଗୁଥିଲା ।

ସେତେବେଳକୁ ବିନ୍ଦା ମନରେ ଥିବା ଭୟ ଦୂର ହୋଇଯାଇଥିଲା । ସେ ଖୁସିରେ ନାଚିଉଠିଲା । ଏଥର ସେ ମୋହନର ସାହସ ଓ ବୁଦ୍ଧିକୁ ପ୍ରଶଂସା କରିବାରେ ଲାଗିଲା । ସେମାନେ ଜିତି ଯାଇଥିବାରୁ ଆନନ୍ଦରେ ଦୁହେଁ ଦୁହିଁଙ୍କୁ କୁଣ୍ଢେଇ ପକାଇଲେ । ତାପରେ ଘରକୁ ଫେରିଲେ ।

ଯେତେବେଳେ ସେମାନେ ନିମ୍ବଗଛ ପାଖରେ ପହଞ୍ଚିଲେ, ସେମାନେ ଦେଖିଲେ, ଗଛଟା ଖୁସିରେ ତା' ପତ୍ରକୁ ହଲାଇ ଚାଲିଛି । ତାଙ୍କୁ ଲାଗିଲା ନିମ୍ବଗଛ କହୁଛି, 'ଧନ୍ୟବାଦ' ।



# ଭୋକ

ଅରବିନ୍ଦ ଜଣେ ଧନୀଘର ପିଲା । ତା' ବାପା ଜଣେ ସରକାରୀ ଅଫିସର । ଘରେ ତାଙ୍କର କୌଣସି ପ୍ରକାର ଅଭାବ ଅସୁବିଧା ନଥିଲା । ଛୋଟ ପରିବାରରେ ସବୁବେଳେ ସୁଖ ସୁବିଧା ଲାଗି ରହିଥାଏ । ଘରେ ବାପା, ମାଆ, ଜେଜେବାପା ଓ ଛୋଟ ଭଉଣୀ ସହିତ ଅରବିନ୍ଦ ବଡ଼ ମଜାରେ ରହୁଥାଏ । ତାଙ୍କର ସୁନ୍ଦର ବଡ଼ ପକ୍କାଘର, ପିନ୍ଧିବା ପାଇଁ ଦାମୀ କପଡ଼ା ଓ ଖାଇବାକୁ ସୁଆଦିଆ ଜିନିଷ ଥିବା ସତ୍ତ୍ୱେ ଅରବିନ୍ଦ ବେଳେବେଳେ ଅଭିଯୋଗ କରେ ଯେ ତା'ର ବାପା ମାଆ ତା' ପ୍ରତି ଠିକ୍ ଭାବରେ ଯତ୍ନ ନେଉନାହାନ୍ତି ।

ଦିନେ ତା' ମାଆ ଆସି କହିଲେ, 'ବାପାରେ ! ଆଜି ସୁଷମା ମାଉସୀଙ୍କ ଘରେ ଭୋଜି ଅଛି । ତୋ ବାପା ଅଫିସରୁ ସିଧା ତାଙ୍କ ଘରକୁ ଯିବେ । ତେଣୁ ଆଜି ଘରେ ରୋଷେଇ ହେବ ନାହିଁ । ତୁ ଆଜି ସ୍କୁଲରୁ ଘଣ୍ଟାଏ ପାଇଁ ଚାଲିଆସିବୁ ସୁଷମା ମାଉସୀଙ୍କ ଘରକୁ । ମୁଁ ଆଗରୁ ସେଇଠିକି ଚାଲି ଯାଇଥିବି ।'

ସେତେବେଳକୁ ସ୍କୁଲଯିବା ସମୟ ହୋଇଯାଇଥିଲା । ଅରବିନ୍ଦ ବିରକ୍ତ ହୋଇ କହିଲା, 'ଓହୋ ! ସିଧାସିଧା କହିଦେଉନା, ମୋତେ ଆଜି ଉପାସ ରଖିବାକୁ ତମର ଇଚ୍ଛା । ତେଣୁ ଘରେ ରୋଷେଇ ହେବ ନାହିଁ ।'

ପୁଅର ଏଭଳି ବେଖାତିର କଥା ଶୁଣି ମାଆ ବୁଝେଇଦେଲେ, 'ଆରେ ! ସେମିତି କଥା କହନ୍ତି ନାହିଁ । ଭୋଜିକୁ ବହୁତ ଲୋକ ଆସିବେ, ଭୋଜିରେ ମିଳିମିଶି ଖାଇଲେ ମଜା ଆସିବ । ଏଭଳି ଉତ୍ସବରେ ସମସ୍ତ ବନ୍ଧୁବାନ୍ଧବ, ସାଙ୍ଗସାଥୀ ଉପସ୍ଥିତ ରହିବା ଉଚିତ ।'

"ଠିକ୍ ଅଛି, ତମେ ଉତ୍ସବକୁ ଯାଇ ଭୋଜିଖାଇ ଆସ । ମୁଁ ସେଠିକି ଯିବି ନାହିଁ । ବରଂ ଉପାସ ରହିଯିବି ।"

ଏହା କହି ସେ ତରବର ହୋଇ ସ୍କୁଲ ଯିବାକୁ ବାହାରିଗଲା । ସକାଳର ଜଳଖିଆ ବି ଖାଇଲା ନାହିଁ ।

ଦିନ ବାରଟା ବାଜିବାବେଳକୁ ଅରବିନ୍ଦକୁ ଭୀଷଣ ଭୋକ ଲାଗିଲା । ଆଗରୁ ସେ ମାଆଙ୍କ ପାଖରେ ବହୁତ ଥର ଜିଦ୍ କରିଛି ସିନା, ଉପାସ କେବେ ରହିନଥିଲା । ତା' ପକେଟରେ କିଛି ଟଙ୍କା ଥିଲା, କିନ୍ତୁ ଦୋକାନରେ ତା' ପସନ୍ଦର ଖାଇବା ଜିନିଷ ନଥିଲା ।

ଯାହାହେଉ, ସେଦିନ ଇତିହାସ ପଢ଼ାଉଥିବା ଦିଦି ଆସି ନଥିଲେ । ପିରିୟଡ୍ ଖାଲିଥିଲା । ସେ ଭାବିଲା, ଯାଉଛି ଘରକୁ ଚାଲିଯିବି ।

ଘରେ ପହଞ୍ଚି ସେ ଦେଖିଲା, ଦୁଆର ବନ୍ଦ । ସୁଷମା ମାଉସୀଙ୍କ ଘରକୁ ସମସ୍ତେ ପଳାଇଥିଲେ ।

ରାଗ ମନରେ ଗୋଟାଏ ଫେଲ୍ ହୋଇଥିବା ପିଲା ଭଳି ମୁଣ୍ଡ ତଳକୁ କରି ସେ ରାସ୍ତାରେ ଚାଲିଲା । ହଠାତ୍ ପଛରୁ ଶୁଣାଗଲା, 'ଚୋର, ଚୋର ପଳେଇଲା, ତାକୁ ଧର ।'

ଅରବିନ୍ଦ ଦେଖିଲା ତାରି ବୟସର ପିଲାଟିଏ ଜୀବନ ବିକଳେ ଖୁବ୍ ଜୋର୍‌ରେ ଦୌଡ଼ି ଦୌଡ଼ି ତା' ପାଖଦେଇ ଚାଲିଗଲା । କେତେଜଣ ଲୋକ 'ଚୋରକୁ ଧର' କହି ତା' ପଛରେ ଦୌଡୁଥିଲେ । ଆଗପଛ ବିଚାର ନକରି ଅରବିନ୍ଦ ସେ ଚୋରପିଲାକୁ ଧରିବାକୁ ଗୋଡ଼ାଇଲା ।

କିଛି ସମୟ ପରେ ଚୋରପିଲା ରାସ୍ତା ତଳେ ଥିବା ନାଳ ଭିତର ଦେଇ ଦୌଡ଼ିଲା । ଅରବିନ୍ଦ



ତା' ପଛେ ପଛେ ଧାଇଁଥାଏ । ଗୋଡ଼ାଉଥିବା ଲୋକମାନେ ତାଙ୍କଠାରୁ ବହୁତ ଦୂରରେ ରହିଯାଇଥିଲେ ।

ଅରବିନ୍ଦ ଦେଖିଲା ସେ ପିଲାଟା ଅତି ଅପରିଷ୍କାର ବାଟଦେଇ ଦୌଡ଼ୁଛି । ପଚା ଗନ୍ଧ ନାଳ ଭିତରେ ପଶି ସେ ଆରପାଖକୁ ଚାଲିଗଲା । ଅରବିନ୍ଦ ତା' ପଛେ ପଛେ କାଦୁଅ ପଙ୍କ ଭିତରେ ପଶି ତାକୁ ଧରିବାକୁ ଧାଇଁଥାଏ । ପିଲାଟା ତରବର ହୋଇ ଗୋଟାଏ ଭଙ୍ଗା ଝୁମ୍ପୁଡ଼ି ଭିତରେ ପଶିଯାଇ ଦଦରା ତାଟିଟାକୁ ଆଉଜେଇ ଦେଲା । ଝୁମ୍ପୁଡ଼ି ଦୁଆରେ ଜଣେ ରୋଗିଣା ବୁଢ଼ା ବସି କାଶୁଥିଲା । ସେ ବୁଢ଼ା ବି ଉଠିଯାଇ ଝୁମ୍ପୁଡ଼ି ଭିତରକୁ ପଶି ଦଦରା ତାଟିକୁ ବନ୍ଦ କରିଦେଲା ।

ଦୁର୍ଗନ୍ଧରେ ନାକ ଫାଟି ପଡୁଥାଏ, ଝୁମ୍ପୁଡ଼ି ଭିତରକୁ ଅରବିନ୍ଦ ନାକରେ ହାତ ଦେଇ ଚାରିଆଡ଼କୁ ଚାହିଁଲା । ଚୋର ପିଲାଟି ଜୋର୍‌ରେ ନିଶ୍ୱାସ ନେଉଥାଏ । ତା' ହାତରେ ଗୋଟାଏ ବଡ଼ ପାଉଁରୁଟି ପୁଡ଼ିଆ ଥାଏ । ସେ ପୁଡ଼ିଆ ଚିରିଫାଡ଼ି ଖୋଲିବାରେ ଲାଗିପଡ଼ିଥାଏ । ଏଣେ ଭୟରେ ତା' ହାତ ଥରୁଥାଏ ।

ଅରବିନ୍ଦକୁ ଦେଖି ତା' ହାତରୁ ପାଉଁରୁଟି ପୁଡ଼ିଆ ଖସିପଡ଼ିଲା । ସେଥିରେ ଥିବା ଖଣ୍ଡଗୁଡ଼ିକ ଏଣେତେଣେ ବୁଣିହୋଇପଡ଼ିଲା । ବାହାରେ ବସିଥିବା ଲୋକଟି ଦୌଡ଼ିଆସି ତଳେ ପଡ଼ିଥିବା ରୁଟିରୁ ଖଣ୍ଡେ ଉଠାଇ ତରବର ହୋଇ ପାଟିରେ ପୂରାଇଦେଲା । ସେହି ଝୁମ୍ପୁଡ଼ି ଭିତରେ ତଳେ ଜଣେ କଙ୍କାଳସାର ବୁଢ଼ୀ ଶୋଇଥିଲା, ସିଏ ବିକଳ ହୋଇ ପାଉଁରୁଟି ଖଣ୍ଡିଏ ନେବାପାଇଁ ହାତ ବଢ଼େଇଦେଲା । ଛୋଟିଆ ଛୁଆଟି ସେ ବୁଢ଼ୀକୁ ଆଉଜି ବସିଥିଲା । ଆଉ ଜଣେ ଦଶବାର ବର୍ଷର ଝିଅ ସେଇଠି ସମସ୍ତଙ୍କୁ ବୋକା ପରି ଚାହିଁ ଠିଆ ହୋଇଥାଏ ।

ଅରବିନ୍ଦ ଏସବୁ ଦୃଶ୍ୟ ଦେଖି ସ୍ଥିର ରହିଗଲା । ତା' ହୃଦୟ ତରଳିଗଲା । ତାକୁ ଲାଗିଲା, ଏମାନଙ୍କର ଦୁଃଖ ଆଉ ଅଭାବକୁ ଦେଖିଚାଲିଲେ, ସେ କାନ୍ଦି ପକେଇବ । ତେଣୁ ସେ ନିଜକୁ ନିଜେ ସମ୍ଭାଳି ନେଲା । ସେ ପିଲାଟି ଆଡ଼କୁ ଚାହିଁ କହିଲା, 'ତୁ ଚୋରି କରୁଛୁ, ତତେ ଲାଜ ମାଡୁନାହିଁ !'

ପିଲାଟି ଦୁଇହାତ ଯୋଡ଼ି ଛେପ ଢୋକି କହିଲା, "ମୁଁ ... ମୁଁ ଚୋର ନୁହଁ । ମୁଁ ଆଉ ଆମ ଘରେ କେହି ଚାରିଦିନ ହେଲା କିଛି ଖାଇନାହୁଁ । ଏଇ ବୁଢ଼ାଲୋକଟି ହେଉଛି ମୋ ବାପା । ସେ ଆଗରୁ ଗୋଟାଏ ମିଲ୍‌ରେ ଚାକିରି କରୁଥିଲା । ତାକୁ ଶ୍ୱାସରୋଗ ହେବାରୁ ସେ ଆଉ କାମ କରିବାକୁ ଯାଇପାରୁନାହିଁ । ସେ ମହିଳାଜଣକ ହେଉଛି ମୋ ମାଆ । ବିଡ଼ି ତିଆରି କାରଖାନାରେ ବିଡ଼ି ବନ୍ଧା କାମ କରୁଥିଲା । ତାକୁ ବି ଯକ୍ଷ୍ମାରୋଗ ହୋଇଛି । ସେ ଆଉ ଯାଇପାରୁନାହିଁ । ଏ ଦୁଇଜଣ ହେଲେ ମୋର ସାନଭଉଣୀ । ଖାଦ୍ୟ ଅଭାବରୁ ଏମାନେ ଏମିତି ଦେଖାଯାଉଛନ୍ତି । ମୁଁ ଆଗରୁ ଗୋଟାଏ ସ୍କୁଲରେ ପାଠ ପଢୁଥିଲି । ଏବେ ମୂଲ ମଜୁରି କାମ କରୁଛି । କେବେ ଯଦି କାମ ନମିଳିଲା, ତେବେ ଆମେ ଖାଇବୁ କ'ଣ ? ବଞ୍ଚିବୁ କେମିତି ? କିଛି ତ ... ।"

ପିଲାଟିର କଥା ଶେଷ ନହେଉଣୁ ତାକୁ ଧରିବାକୁ ଗୋଡ଼ାଉଥିବା ଲୋକମାନେ ଆସି ସେ ଝୁମ୍ପୁଡ଼ି ପାଖରେ ପହଞ୍ଚିଗଲେ । ଜଣକ ପରେ ଜଣେ ସେ ଝୁମ୍ପୁଡ଼ି ଭିତରକୁ ପଶି ଆସିଲେ ।

ଜଣେ ମୋଟା ନିଶୁଆଲୋକ ବଡ଼ପାଟିରେ ଚିତ୍କାର କରି କହିଲା, "ହଁ ରେ ! ଏଇଠି ସେ ଚୋର ପିଲା ଅଛି । ଏଇ ତ ଦୋକାନରୁ ପାଉଁରୁଟି ଧରି ଦୌଡ଼ି ପଳାଇ ଆସିଥିଲା ।" ଧର ତାକୁ ପୁଲିସର ଜିମାରେ ଦେଇଦେଲେ ଠିକ୍ ହେବ । ଆଉ ଜଣେ ପଗଡ଼ିପିନ୍ଧା ଲୋକ କହିଲା ।

ଅରବିନ୍ଦ ଦେଖିଲା ପିଲାଟା ଭୟରେ ବରଡ଼ା ପତ୍ର ଭଳି ଥରୁଛି । ଭୟାତୁର ଆଖିରେ ସେ ତା' ବାପାମାଆଙ୍କୁ ତ ଏଣେ ଦୁଇଭଉଣୀଙ୍କ ଆଡ଼କୁ ଚାହିଁ ଦେଉଛି । ସେ ପିଲାଟିର ଘରକଥା ଏବଂ ପାଉଁରୁଟି ଚୋରି କରିବା କଥା ସବୁ ବୁଝି ଯାଇଥିଲା । ସେ ପିଲାଟି ଆଗରେ ଠିଆ ହୋଇପଡ଼ି କହିଲା, "ମଉସା ! ଏ ପିଲାଟା ଚୋରି କରିଛି, ଏକଥା ସତ । କିନ୍ତୁ ତାକୁ ଧରି ଥାନାକୁ ନେଇଯାଆନ୍ତୁ ନାହିଁ କି ପୁଲିସର ଜିମାରେ ଦିଅନ୍ତୁ ନାହିଁ ।" ଅରବିନ୍ଦର କଥା ଶୁଣି ଆଉ ଜଣେ ଟୋପିପିନ୍ଧା ଲୋକ କହିଲା, 'କି'ରେ ! ଚୋରକୁ ଧରି ତାକୁ ପୁଲିସରେ ଦେବୁନାହିଁ କାହିଁକି ? ତୁ କ'ଣ ତା'ର ମାଉସୀ ପୁଅ ଭାଇ କି ?'

ଅରବିନ୍ଦ ଲୋକଟାର କଥା ଶୁଣି ରାଗିଗଲା । ସେ ତାକୁ କଟମଟ କରି ଚାହିଁ, ମୋଟାଲୋକକୁ କହିଲା, "ଆଚ୍ଛା, ସେ ପାଉଁରୁଟିର ଦାମ୍ କେତେ ? ମୁଁ ସେ ପଇସା ଦେବି ।"

"ଦଶଟଙ୍କା ପଚାଶ ପଇସା । ଦେଇପାରିବୁ ?" ମୋଟାଲୋକଟା ଅରବିନ୍ଦକୁ ଧମକେଇଲା ।

ଅରବିନ୍ଦ ଦୁଇଟା ଦଶଟଙ୍କିଆ ନୋଟ୍ ପକେଟ୍‌ରୁ ବାହାର କରି ବଢ଼େଇ ଦେଇ କହିଲା, "ନିଅନ୍ତୁ !



ରଖନ୍ତୁ ଏ କୋଡ଼ିଏ ଟଙ୍କା । ଏବେ ଆପଣମାନେ ଦୟାକରି ଏଠୁ ଚାଲିଯାଆନ୍ତୁ ।"

କୋଡ଼ିଏ ଟଙ୍କା ପାଇ ମୋଟାଲୋକ ସାଙ୍ଗରେ ଆସିଥିବା ଲୋକମାନେ ଚାଲିଗଲେ ।

ଲୋକମାନେ ଚାଲିଯିବାପରେ ଚୋରପିଲାଟି ଅରବିନ୍ଦର ଗୋଡ଼ ତଳେ ପଡ଼ିଗଲା । "ଭାଇ, ତମେ ତ ବହୁତ ଦୟାଳୁ, ମତେ ବଞ୍ଚାଇଦେଲ ।"

ପିଲାଟିର କଥା ଶୁଣି ଅରବିନ୍ଦ ଆଉ କିଛି କହିପାରିଲା ନାହିଁ । ସେ ଭାବୁଥିଲା ଏଇ ପିଲାଟିକୁ କେମିତି ନିୟମିତ ରୋଜଗାର ମିଳିବ । ତା' ପରିବାରକୁ ଖାଇବାକୁ ମୁଠାଏ ମିଳିଗଲେ, ସେ ଆଉ ଚୋରି କରିବ ନାହିଁ । ଏଥିପାଇଁ ସେ ତା' ବାପାଙ୍କୁ କହିଲେ ସେ ନିଶ୍ଚୟ କିଛି ଗୋଟାଏ ବ୍ୟବସ୍ଥା କରିଦେଇ ପାରିବେ ।



ଏଇ ଆଶାରେ ସେ କହିଲା, "ଶୁଣ୍, ତୁ ଆଜି ସଞ୍ଜବେଳେ ଆମ ଘରକୁ ଆସିବୁ । କାମ ପାଇଁ ମୁଁ ବାପାଙ୍କ ସହିତ କଥାହେବି । କିନ୍ତୁ ତୁ ଆଗ ଶପଥ କର, ତୁ ଆଉ କେବେ ବି ଚୋରି କରିବୁ ନାହିଁ ।"

ପିଲାଟି କାନ ଧରିପକାଇଲା । ଅରବିନ୍ଦ ତାଙ୍କ ଘର ଠିକଣା ପିଲାଟିକୁ ଦେଇ ସେ ଜାଗାରୁ ବାହାରିଗଲା । ସେତେବେଳକୁ ସେ ଭୁଲିଯାଇଥିଲା ଯେ ଆଜି ସକାଳୁ ସେ କିଛି ବି ଖାଇନାହିଁ । ନିଜ ପେଟ ଭିତରର ଭୋକଠାରୁ ତ ସେ ଆହୁରି ଭୟଙ୍କର ଭୋକକୁ ଝୁମ୍ପୁଡ଼ି ଭିତରେ ଦେଖିସାରିଛି । ଅରବିନ୍ଦ ଭାବୁଥିଲା, ସିଏ ତ ହଜାର ହଜାର ପିଲାଙ୍କଠାରୁ ବେଶ୍ ଭଲରେ ଅଛି । ତେଣୁ ସେ ମନେ ମନେ ସ୍ଥିରକଲା ଆଉ ଏଣିକି ସେ ତା' ବାପାମାଆଙ୍କୁ ହଇରାଣ କରିବ ନାହିଁ ।

ସେ ପୁଣି ଭାବୁଥିଲା ତା' ବାପା ସେ ପିଲାଟିକୁ କିଛି କାମ ଦେଇପାରିବେ କି ନାହିଁ !



## ଭିକ ମାଗିବ କାହିଁକି ?

ମଙ୍ଗୁର ମାଆ ଜଣେ ଭିକାରୁଣୀ । ସେ ଭିକମାଗି ନିଜର ଗୁଜୁରାଣ ମେଣ୍ଟାଉଥିଲା । ମଙ୍ଗୁ ଜନ୍ମହେବା ବେଳକୁ ତା'ର ବାପା ବଞ୍ଚିଥିଲେ । କିନ୍ତୁ ସେ ଦୁନିଆ ବିଷୟ ଜାଣିବା ବେଳକୁ ତା' ବାପା ମରିସାରିଥିଲେ । ସେ ଜନ୍ମରୁ ଦେଖିଆସିଛି ସିନେମା ହଲ ରାସ୍ତାର ଫୁଟ୍‌ପାଥିରେ ହିଁ ତାଙ୍କ ଝୁମ୍ପୁଡ଼ି ରହିଛି । ତାଙ୍କରି ଭଳି ଆହୁରି କେତେଜଣ ଭିକାରି ସେହି ଫୁଟ୍‌ପାଥିରେ ଝୁମ୍ପୁଡ଼ି ତିଆରି କରି ରହିଛନ୍ତି । ଅପରିଷ୍କାର ଛିଣ୍ଡା ଫଟା କପଡ଼ା ପିନ୍ଧିଥିବା କେତେଜଣ ବୁଢ଼ାବୁଢ଼ୀ କୁଷ୍ଠରୋଗୀ ବି ସେଇଠି ରହନ୍ତି । ତାଙ୍କୁ ଦେଖିଲେ ମଙ୍ଗୁକୁ ଘୃଣା ଲାଗେ । ତଥାପି ସେ ନିଜେ ବି ଗୋଟାଏ ଭିକାରି ହୋଇ ତାଙ୍କ ସହିତ ରହୁଥିଲା ।



ମଙ୍ଗୁର ମାଆ ତାକୁ ଭିକ ମାଗିବାର ସବୁ କୌଶଳ ଶିଖାଇ ଦେଇଥିଲା । କାରଣ ତା' ମାଆ ରୋଗିଣା ହୋଇଯିବାରୁ ଚାହୁଁଥିଲା ପୁଅଟା କେମିତି ଶୀଘ୍ର ଭିକାରି ହୋଇ ରୋଜଗାର କରିବାକୁ ଯୋଗ୍ୟ ହୋଇଯାଉ । ସେ ନିଜେ ଛୁରୀ ଆଉ ବ୍ଲେଡ୍‌ରେ ମଙ୍ଗୁର ହାତଗୋଡ଼ ଆଉ କଅଁଳ ଚମଡ଼ାକୁ କାଟି ସେଇଠି ଦୁର୍ଗନ୍ଧ ଭେସଲିନ ଲେପି ଦେଇଥିଲା । ସେତେବେଳେ ମଙ୍ଗୁକୁ ଭାରି କଷ୍ଟ ହୋଇଥିଲା । ଛାଟିପିଟି ହୋଇ ଯେତେ କାନ୍ଦିଲେ ବି ଶେଷରେ ଭିକାରି ହେବା ପାଇଁ ତାକୁ ଚୁପ୍ ରହିବାକୁ ପଡ଼ିଥିଲା । ମଙ୍ଗୁର ମାଆ ତାକୁ ସତ୍ୟନାରାୟଣ ମନ୍ଦିର ପାହାଚରେ ବସାଇ ଦେଇ କହିଥିଲା, "ଏଇଠି ଅନ୍ୟ ଭିକାରି ପିଲାଙ୍କ ପରି ତୁ ହାଏ ହାଏ କରି ଭିକ ମାଗିବୁ ।"

ମାଆ ଯେମିତି କହିଥିଲା, ମଙ୍ଗୁ ସେଇମିତି ହାଏ ହାଏ କରେ । ପ୍ରତିଦିନ ସକାଳେ ସଂଜରେ ଭକ୍ତ ଓ ଦର୍ଶନାର୍ଥୀଙ୍କର ଭିଡ଼ ଜମେ । ମଙ୍ଗୁ ମନ୍ଦିର ପାହାଚରେ ବସି କାନ୍ଦ କାନ୍ଦ ହୋଇ ତାଙ୍କୁ ଭିକ ମାଗେ । କିଛି ପଇସା ରୋଜଗାର କରିପକାଏ । ଦିନ ଶେଷରେ ସେ ଷ୍ଟେସନ ପାଖ ବଡ଼ ଜଳଖିଆ ଦୋକାନକୁ ଚାଲିଯାଏ । ସେଇଠି ଭଲ ଦାମୀ ମିଠା, ସିଙ୍ଗଡ଼ା, ପିଆଜି, ବରା, ପକୁଡ଼ି ମିଳେ । ଗ୍ରାହକମାନଙ୍କର ଭାରି ଭିଡ଼ ଲାଗେ । ସେମାନେ ପତର ଠୁଙ୍ଗା, କାଗଜ ଥାଳିରେ ଖାଉଥିବାବେଳେ ତାଙ୍କୁ ଭିକାରି ପିଲାମାନେ ଘେରିଥା'ନ୍ତି । ଅଇଁଠା ପତର ଆଉ ବଳକା ଖାଦ୍ୟକୁ ସେମାନେ ଚାହିଁ ରହନ୍ତି । କେହି କେହି ଦୟାଳୁ ଗ୍ରାହକ ଅଇଁଠା ପତ୍ରରେ ଥିବା ବଳକା ମିଠା, ଜଳଖିଆକୁ ତାଙ୍କ ଆଡ଼କୁ ବଢ଼େଇ ଦିଅନ୍ତି । ଭିକାରି ପିଲାମାନେ ତାକୁ ଖାଇ ଅଇଁଠା ପତ୍ରକୁ ଚାଟି ଚାଲନ୍ତି ।

ମଙ୍ଗୁ ସେହି ପିଲାମାନଙ୍କ ଦଳରେ ଥାଏ । ଅନ୍ୟପିଲାଙ୍କ ସହିତ ମାଡ଼ଗୋଳ କରି ଛଡ଼େଇ ଖାଇବାର ସୁଯୋଗ ପାଏନାହିଁ । ବରଂ କେବେ କେବେ ଗ୍ରାହକମାନଙ୍କଠାରୁ ଆଉ ଦୋକାନୀଠାରୁ ଗାଳି ଓ ମାଡ଼ର ଶିକାର ହୋଇଯାଏ । ଥରେ ଜଣେ ଗ୍ରାହକ ବିରକ୍ତ ହୋଇ ତାକୁ ଗୋଇଠାଟିଏ ମାରିଥିଲେ । ସେଦିନ ମଙ୍ଗୁ ଚେତା ହରାଉ ହରାଉ ରକ୍ଷା ପାଇଲା । ଦୁଇଟା ଆଗ ଦାନ୍ତ ଭାଙ୍ଗିଯାଇଥିଲା । ପାଟିରୁ ରକ୍ତ ବାହାରିଥିଲା । ସେହିଦିନ ସେ ଶପଥ ନେଇଥିଲା, ଆଜିଠାରୁ କୌଣସି ଗ୍ରାହକଙ୍କ ପାଖକୁ ଯିବ ନାହିଁ । ବରଂ ଅଇଁଠା ପତ୍ର ଫୋପାଡ଼ି ଦେବା ପରେ ତାକୁ ଧରିବାକୁ ଦୌଡ଼ିବ ।

ଥରେ ଜଣେ ଦୟାବାନ ଗ୍ରାହକ ମଙ୍ଗୁ ହାତରେ ମିଠେଇ ପୁଡ଼ିଆଟା ଧରେଇ ଦେଲେ । ସେ ତରବର ହୋଇ ତାକୁ ଧରି ଦୌଡ଼ି ଆସିଲା ତା' ମାଆ ପାଖକୁ । ମିଠେଇ ଦେଖି ତା' ମାଆ ବହୁତ ଖୁସି ହୋଇଗଲା । ତା' ଆଖିରେ ଲୁହ ଭରିଗଲା । ସେ କହିଲା, "ବାପାରେ ! ତୁ ମୋର ସୁନାପୁଅ । ମାଆ ପାଇଁ ତୋର କେଡ଼େ ଦରଦ ! ସେ ଘୁଙ୍ଗାଟା ପରା ତା' ମାଆ ହାତରୁ ଛଡ଼େଇ ସବୁ ଖାଇଯାଏ । ତା' ମାଆ ବିଚାରୀକୁ ଭୋକରେ ଶୋଇବାକୁ ପଡ଼େ ।"

ମଙ୍ଗୁ ସେହି ରାସ୍ତାରେ ଏପଟ ସେପଟ ହେଉ ହେଉ ଯଦି କୌଣସି ଭଦ୍ରଲୋକଙ୍କୁ ଦେଖିପକାଏ,

ତେବେ ସେ ତାଙ୍କ ଆଡ଼କୁ ହାତ ବଢ଼େଇ କହି ପକାଏ, "ବାବୁ ! ଭଗବାନଙ୍କ ନାମରେ ଟଙ୍କାଟିଏ ଦିଅନ୍ତୁ । ଚଣା କିଣି ଖାଇବି । ଦୁଇଦିନ ହେଲା ମୁଁ କିଛି ଖାଇନାହିଁ ।" ଏଇମିତି ଭିକ ମାଗିବାକୁ ତା' ମାଆ ତାକୁ ଶିଖାଇ ଦେଇଥିଲା । କେବେ ତାକୁ ଗାଳି ମିଳେ ତ ପୁଣି କାହାଠାରୁ ମାଡ଼ ବି ମିଳିଯାଏ । ମଙ୍ଗୁ



ଦିନଯାକ ବୁଲିବୁଲି ଭିକ ମାଗେ । ବାବୁମାନଙ୍କୁ ଆକୁଳ ନିବେଦନ କରି କରି ଥକିପଡ଼େ । ତଣ୍ଟି ଶୁଖିଯାଏ । ମନ୍ଦିରରେ ଗହଳି କମିଗଲେ ସେ ଘରକୁ ଫେରିଆସେ । ଖୁବ୍ ଶୀଘ୍ର ତାକୁ ନିଦ ଆସିଯାଏ । କିନ୍ତୁ ତା' ମାଆ ଆଖିକୁ ନିଦ ଆସେ ନାହିଁ । ସାରାରାତି ଖୁଁ ଖୁଁ ହୋଇ କାଶିଚାଲେ ।

ଦିନେ ଜଣେ ଧନୀଲୋକ ସେହି 'ଲକ୍ଷ୍ମି ସିଲ୍କ ଷ୍ଟୋର'ରୁ ତାଙ୍କ ହାତରେ ଗୁଡ଼ିଏ ଲୁଗା ପ୍ୟାକେଟ୍ ଧରି ବାହାରିଲେ । ତାଙ୍କର ନାମ ଥିଲା 'ଈଶ୍ୱରବାବୁ' । ସେ ପିଲାବେଳେ ବହୁତ ଗରିବ ଥିଲେ । ସହରରେ ତାଙ୍କର କେତୋଟି କାରଖାନା ଥିଲା । ନିଜର ଚେଷ୍ଟା ଏବଂ ନିଷ୍ଠା ଫଳରେ ପରିଶ୍ରମ କରି ସେ ଧନୀ ହୋଇ ପାରିଥିଲେ । ଈଶ୍ୱରବାବୁଙ୍କୁ ଦେଖି ମଙ୍ଗୁ ତାଙ୍କ ଠାରୁ ଦୂରରେ ଥାଇ ହାତ ପତେଇ ଦେଲା । ସେ କିଛି କହିବା ଆଗରୁ ଈଶ୍ୱରବାବୁ ତାକୁ ହାତଠାରି ପାଖକୁ ଡାକିଲେ ।



ମଙ୍ଗୁ ଭାବିଲା ଧନୀଲୋକଟି ନିଶ୍ଚୟ କିଛି ପଇସା ଦେବାକୁ ପାଖକୁ ଡାକୁଛନ୍ତି । କିନ୍ତୁ ସେ ତାଙ୍କ ପାଖରେ ପହଞ୍ଚି ଦେଖିଲା ବାବୁଜଣଙ୍କ ପକେଟରେ ହାତ ନପୂରାଇ ତାକୁ କହିଲେ, "ଆରେ ଏ ପିଲା ! ଏ ଲୁଗା ପ୍ୟାକେଟ୍‌କୁ ଧର ମୋ ସାଙ୍ଗରେ ଚାଲ । ମୋ ଗାଡ଼ି ସେ ଛକରେ ଛିଡ଼ା ହୋଇଛି ।" ଈଶ୍ୱରବାବୁଙ୍କର କହିବା ଢଙ୍ଗରେ ଏତେ ଆନ୍ତରିକତାଭରା ଆଦେଶ ଥିଲା ଯେ ମଙ୍ଗୁ ଆଉ ମନା କରିପାରିଲା ନାହିଁ । ଲୁଗା ପକେଟ୍‌ଗୁଡ଼ିକୁ ମୁଣ୍ଡେଇ ଚାକରଟି ଭଳି ସେ ଈଶ୍ୱରବାବୁଙ୍କ ପଛେ ପଛେ ଚାଲିଲା । ବାଟରେ ଚାଲୁ ଚାଲୁ ବାବୁ ପଚାରିଲେ,

"କିରେ ! ତୁ କରୁଛୁ କଣ ?"

"ଆଜ୍ଞା ! ଭିକ ମାଗୁଛି ।"

"କାହିଁକି ?"

"ପେଟ ପୋଷିବା ପାଇଁ ।"

"ତାହେଲେ ତ କିଛି କଷ୍ଟ ହେଉନଥିବ !"

ବାବୁଙ୍କ କଥା ଶୁଣି ମଗୁ କହିଲା, "କି କଥା କହୁଛ ଆଜ୍ଞା ? ଭିକ ମାଗିବା ଏତେ ସହଜ କାମ ନୁହେଁ । ସକାଳୁ ରାତିଯାଏ ଆମକୁ ଏତେ ଦୌଡ଼ାଦୌଡ଼ି କରିବାକୁ ପଡ଼େ ଯେ ସଞ୍ଜବେଳକୁ ଜୀବନ ଛାଡ଼ିଗଲା ଭଳି ଲାଗେ । ଅଧିକାଂଶ ଦିନ ତ ଗାଳି ଆଉ ଧିକ୍କାର ଶୁଣେ । ଯଦି ବଦମାସ ଲୋକର ହାବୁଡ଼ରେ ପଡ଼ିଲି, ତେବେ ସେ ଦୁଇଚାରି ଚାପୁଡ଼ା ବି ମୋ ଗାଲରେ ବସେଇ ଦିଅନ୍ତି । ଆଉ ବଜାର ଗଳି କୁକୁର ତ ଆମକୁ ଦେଖିଲେ କାମୁଡ଼ି ଗୋଡ଼େଇ ଆସନ୍ତି । ଭୁକି ଭୁକି କାନ ଫଟେଇ ଦିଅନ୍ତି ।"

ମଗୁର କଥା ଶୁଣି ଈଶ୍ୱରବାବୁ ଅନ୍ୟମନସ୍କ ହୋଇଯାଇଥିଲେ । ଛକରେ ଥିବା କାର ପାଖରେ ପହଞ୍ଚିଯାଇ କହିଲେ, "ହଁ, ଏ ପ୍ୟାକେଟ୍‌କୁ ନେଇ ଗାଡ଼ିର ପଛ ସିଟ୍‌ରେ ରଖିଦେ ।"

ମଗୁ ଗାଡ଼ିରେ ଜିନିଷ ରଖିସାରିବା ପରେ ପୁଣି ଈଶ୍ୱରବାବୁ ତାକୁ କହିଲେ, "କିରେ ! ତୁ କହୁଥିଲୁ ପରା ଭିକ ମାଗିବାଟା ସହଜ କାମ ନୁହେଁ ବୋଲି । ଭାରି କଷ୍ଟ ନା ! ତେବେ ସେ ଭିକମଗା ଭଳି ଛୋଟ କାମ କରୁଛୁ କାହିଁକି ?"

ମଗୁ ପୁଣି ଥରେ କହିଲା, "ବାବୁ ! ଏଇ ପେଟ ପାଇଁ ତ ଭିକ ମାଗୁଛି । ଯାହା ଦେବାର ମୋତେ ଦିଅନ୍ତୁ, ଉପଦେଶ ଦିଅନ୍ତୁନି । ମୁଁ ସେତିକିରେ ସନ୍ତୁଷ୍ଟ ହୋଇ ଚାଲିଯିବି ।"

ଏତିକି କହି ସେ ବାବୁଙ୍କ ଆଡ଼କୁ ହାତ ବଢ଼େଇ ଠିଆହେଲା ।



ଈଶ୍ୱରବାବୁ ମଙ୍ଗୁ କଥା ଶୁଣି କହି ପକାଇଲେ, "ଆରେ ବାଃ ! ତୁ ତ ଭାରି ଚାଲାକ ଜଣାପଡୁଛୁ । ହଁ ଶୁଣ, ମୁଁ କେବେ ଭିକାରିଙ୍କୁ ଭିକ ଦିଏ ନାହିଁ । କିନ୍ତୁ ତା' ବଦଳରେ କାମ ଯୋଗାଇଦିଏ । ଖାଲି ସେତିକି ନୁହେଁ । ମୁଁ ନିଜର ପୁଅ ଝିଅ ଓ ସ୍ତ୍ରୀ ତଥା ଚିହ୍ନା ବନ୍ଧୁବାନ୍ଧବଙ୍କୁ ମଧ୍ୟ ଏକଥା କହିଦେଇଛି ଯେ କେହି କେବେ ଛୋଟପିଲାଙ୍କୁ ଭିକ ଦେବ ନାହିଁ । ଯଦି ସମ୍ଭବ ହେଉଛି, ତାଙ୍କୁ କିଛି କାମ କରିବାକୁ ଦିଅ । ମୋ ସାଙ୍ଗରେ ଚାଲ । ଦେଖିବୁ, ମୋ କାରଖାନାରେ କେତେ ପିଲା କାମ କରୁଛନ୍ତି । ଆଉ ସଞ୍ଜବେଳେ ବସି ପାଠ ପଢୁଛନ୍ତି ।"

ଈଶ୍ୱରବାବୁଙ୍କ କଥା ଶେଷ ହେବାବେଳକୁ ମଙ୍ଗୁର ହାତ ତଳକୁ ଖସି ଆସିଥିଲା । ସେ ବୋକାଙ୍କ ଭଳି ତାଙ୍କ ମୁହଁକୁ ଚାହିଁ ଭାବୁଥିଲା, ଆଜିଯାଏ ତ ଏମିତିକା ଧନୀଲୋକ କେବେ ଦେଖିନାହିଁ, ଯିଏ ଭିକାରିକୁ ଟଙ୍କାଟିଏ ଦିଏ ନାହିଁ । ସିଏ ପୁଣି କାମ ଦେବା କଥା କହୁଛନ୍ତି ।

ଈଶ୍ୱରବାବୁ ଆଦେଶ ଦେଇ କହିଲେ, "ଆରେ ପିଲା ଚାହିଁଛୁ କ'ଣ ? ବସ୍ ଏ କାର୍ ପଛରେ । ଚାଲ୍ ମୋ ସାଙ୍ଗରେ ।"

କିଛି କଥା ନକହି ମଙ୍ଗୁ ଚୁପ୍‌ଚାପ୍ ଯାଇ ସେ କାର୍‌ରେ ବସିପଡ଼ିଲା । କିନ୍ତୁ ଫେରିବାବେଳକୁ ସେ ବହୁତ ଖୁସି ହୋଇଯାଇଥିଲା । କାରଣ ଈଶ୍ୱରବାବୁ ତାକୁ ତାଙ୍କ କାରଖାନାରେ ମେସିନ୍ ସଫା କାମରେ ହେଲପର ହେବାକୁ କାମ ଦେଇ ସାରିଥିଲେ । ସଫାସୁତରା ସାର୍ଟ ପ୍ୟାଣ୍ଟ ପିନ୍ଧିବାକୁ ଦେଇଥିଲେ । ଫେରିବା ବେଳକୁ ପକେଟ୍‌ରେ ପାଞ୍ଚଟଙ୍କା ବି ପୂରେଇ ଦେଇଥିଲେ ।

ମଙ୍ଗୁର ଇଚ୍ଛା ହେଉଥିଲା ନିଜର ଖୁସିକୁ ମାଆ ସହିତ ବାଣ୍ଟିଦେବ । କିନ୍ତୁ ପରେ ସେ ମାଆ ଭୟରେ ନିଜ ଖୁସିକୁ ମନ ଭିତରେ ଚାପି ରଖିଦେଲା ।

ଏବେ ସେ ଈଶ୍ୱରବାବୁଙ୍କ କାରଖାନାକୁ ତ ଯାଉଛି, ବଳକା ସମୟରେ ଆଗପରି ଭିକ ବି ମାଗୁଛି ; ଯେମିତିକି ମାଆ ମନରେ କୌଣସି ପ୍ରକାର ସନ୍ଦେହ ସୃଷ୍ଟି ନହେଉ । ଏମିତି ତ ମାଆ ବେମାରରେ ପଡ଼ିରହିଛି । ତା' ଖଙ୍କାରରେ ରକ୍ତ ପଡୁଛି । ଅଧିକାଂଶ ସମୟ ସେ ଏବେ ଫୁଟପାଥରେ ଥିବା ନିମ୍ବଗଛମୂଳେ ଶୋଇ ରହୁଛି । ଦୁଇ ତିନିଥର ସେ ଡାକ୍ତରଖାନାକୁ ଯାଇ ଫେରିଛି । ସବୁଥର ଫେରିବାବେଳେ ତା' ମୁହଁ ଶେତା ପଡ଼ିଯାଏ । କାରଣ ଡାକ୍ତରବାବୁ ବହୁତ ଦାମୀଦାମୀ ଔଷଧ ଲେଖିଦିଅନ୍ତି । ତାକୁ କିଣିବାକୁ ମାଆ ପାଖରେ ପଇସା ନଥାଏ ।

ଥରେ ମଙ୍ଗୁ ଦେଖିଥିଲା, ଫୁଟପାଥର ବଦମାସ କଲୁଆ ଓସ୍ତାଦକୁ ମାଆ କାକୁତିମିନତି କରୁଥିଲା । ବୋଧହୁଏ ପଇସା ପାଇଁ । କିନ୍ତୁ ମାଆକୁ ପଇସାଟିଏ ନଦେଇ ଓଲଟା ସେ ପିଟୁଥିଲା । ଆଉଥରେ ସେ ଅଧାଜଳା ସିଗାରେଟ୍‌କୁ ନେଇ ମାଆର ହାତ ପାପୁଲିରେ ଚେଙ୍କ ଦେଇଥିଲା । ସେଦିନ ମଙ୍ଗୁ ମନରେ ଭାରି ରାଗ ଆସିଥିଲା । କିନ୍ତୁ ସେ କିଛି ବି କରିପାରୁ ନଥିଲା । ସତରେ କଲୁଆ ଓସ୍ତାଦ ବହୁତ ଖରାପ ଲୋକ ।

ଶେଷରେ ସେହି ଦିନ ଆସିଗଲା ଯେତେବେଳେକି ମାଆକୁ କଲୁଆ ଓସ୍ତାଦ ପାଖରେ କାକୁତିମିନତି କରିବାକୁ ପଡ଼ିଲା ନାହିଁ । ପ୍ରଥମଥର ମଜୁରି ବାବଦକୁ ତାକୁ ପଚାଶ ଟଙ୍କା ମିଳିଯାଇଥିଲା । ମଙ୍ଗୁ ବହୁତ ଉତ୍ସାହିତ ହୋଇ ମାଆ ପାଖକୁ ଯାଇ କହିଲା, "ମାଆ ! ଡାକ୍ତରବାବୁ ଲେଖିଦେଇଥିବା ଔଷଧ କାଗଜଟା ମୋତେ ଦେ । ମୁଁ ତୋ ପାଇଁ ଔଷଧ କିଣି ଆଣିଦେବି । ମୋ ପାଖରେ ଟଙ୍କା ଅଛି । ହଁ ମାଆ, ପଚାଶ ଟଙ୍କା ଅଛି ।"

"ତୁ କ'ଣ କେଉଁଠୁ ଚୋରି କରି ଆଣିଛୁ ?" ମାଆ ତାକୁ ସନ୍ଦେହ ଦୃଷ୍ଟିରେ ଚାହିଁ ରହିଥିଲା ।

ମଙ୍ଗୁର ଉତ୍ସାହରେ ଭଟ୍ଟା ପଡ଼ିଗଲା । ସେ ଛାନିଆଁ ହେଇଗଲା । ସେ ମୁହଁ ତଳକୁ କରି କହିଲା, "ମାଆ ! ମୋତେ ତ ଭିକ ମାଗିବାକୁ ମୋଟେ ଭଲ ଲାଗୁନାହିଁ, ଚୋରି କରିବି କେମିତି ? ମୁଁ ଏବେ ଗୋଟାଏ ଚାକିରି କରୁଛି । ଈଶ୍ୱର ଶେଠଙ୍କ ପାଖରେ ମାସସାରା କାମ କଲି । ଆଜି ମୋତେ ପ୍ରଥମ ମାସର ଦରମା ମିଳିଛି । ସତ କହୁଛି ମାଆ, ମୋତେ ତୁ କ୍ଷମା କରିଦେବୁନା ?"

ମଙ୍ଗୁର ଆଖି ଲୁହ ଛଳଛଳ ହୋଇଗଲା । ସେଥିରେ ଯେମିତି ଭୟ ଭରିଥିଲା । ମାଆ ତାକୁ କୁଣ୍ଢେଇ ପକେଇ ନିଜେ ବି କାନ୍ଦିଉଠିଲା । ପୁଅର କଥା ଶୁଣି ସେ ବହୁତ ଖୁସି ହେଇଯାଇଥିଲା । ଏଭଳି ପୁଅକୁ ପାଇ ସେ ନିଜକୁ ଗର୍ବିତ ମନେ କରୁଥିଲା ।

ଦୂରରୁ ସେମାନେ ଦେଖିଲେ ଫୁଟପାଥରେ ବସିଥିବା ଘୁଙ୍ଗାର ମାଆ କଲୁଆ ଓସ୍ତାଦକୁ ଟଙ୍କା ମାଗିବାରୁ ସେ ତାକୁ ଗାଳିମାଡ଼ ଦେଉଥିଲା । ତେଣେ ଘୁଙ୍ଗା ତା'ର ସାଙ୍ଗମାନଙ୍କ ସହିତ ବସି ଗଞ୍ଜେଇ ଟାଣିଟାଣି ନିଜ ମାଆର ମାଡ଼ଗାଳିକୁ ଦେଖୁଥିଲା ।



